# ପଥର ଘର

( କାଳ୍ପନିକ ନାଟକ )


ରଚନା :

କବିଚନ୍ଦ୍ର ଡକ୍ଟର କାଳୀଚରଣ ପଟ୍ଟନାୟକ

ନାଟ୍ୟାଚାର୍ଯ୍ୟ



ଫ୍ରେଣ୍ଡସ୍ ପବ୍ଲିଶର୍ସ



ପୁସ୍ତକ ପ୍ରକାଶକ ଓ ବିକ୍ରେତା

ବିନୋଦ ବିହାରୀ, କଟକ-୨

# ପଥର ଘର

(କାଳ୍ପନିକ ନାଟକ)


ଲେଖକ :
**କବିଚନ୍ଦ୍ର**
**ଡକ୍ଟର କାଳୀଚରଣ ପଟ୍ଟନାୟକ**

ପ୍ରକାଶକ :
**ସହଦେବ ପ୍ରଧାନ**
ଫ୍ରେଣ୍ଡ୍ସ୍ ପବ୍ଲିଶର୍ସ
ବିନୋଦବିହାରୀ
କଟକ-୭୫୩୦୦୨

ପ୍ରଚ୍ଛଦ :
**ଅସିତ ମୁଖାର୍ଜି**
ପ୍ରଥମ ମୁଦ୍ରଣ, ୧୯୭୮
ଦ୍ୱିତୀୟ ମୁଦ୍ରଣ, ୧୯୮୦

ମୁଦ୍ରଣ :
**ବାଣୀପ୍ରଭା ମୁଦ୍ରଣୀ**
ଖଟବିନ୍ ସାହି
କଟକ-୭୫୩୦୦୮

ମୂଲ୍ୟ ପାଞ୍ଚ ଟଙ୍କା


**PATHARA GHARA**

(An Imaginary Play)


Author :
**Kabichandra**
**Dr. Kali Charan Pattanaik**

Publisher
**Sahadev Pradhan**
Friends' Publishers
Binodbehari
Cuttack-753002

Cover design
**Asit Mukherje**
First Edition, 1978
Second Edition, 1980

Printer :
**Baniprabha Mudrani**
Khatbin Sahi
Cuttack-753008

Price : **Rupees Five only**

# ପଥର ଘର

(କାଳ୍ପନିକ ନାଟକ)

## ନାଟକର ଚରିତ୍ର ସମୂହ :

—ପୁରୁଷ—

ଜନତା
୧ମ ବୃଦ୍ଧ
୨ୟ ବୃଦ୍ଧ
ମର୍କତକେଶରୀ
ପ୍ରତିହାରୀ
ମନ୍ତ୍ରୀ
ଖୁଣ୍ଟିଆ
ବିଶ୍ୱକର୍ମୀ
ରଘୁ
ବିଜ୍ଞାଣୀ
ଶ୍ରମିକ
ଖାରୁଆ
ଖାଣ୍ଡ
ଅନଙ୍ଗଭୀମଦେବ
ଲକ୍ଷ୍ମଣ
ଇଶାନ
ବିଶ୍ୱନାଥ
ଡଗର
ନରସିଂହଦେବ
ଅମାତ୍ୟ
ନରସିଂହ (ସେନାପତି)
ପୁରୁଷୋତ୍ତମଦେବ
ବକ୍ସି
ଶେଷ
ପ୍ରତାପରୁଦ୍ରଦେବ

ରାମାନନ୍ଦ
କବିଡିଣ୍ଡିମ
ଦୂତ
ଶ୍ରୀ ଚୈତନ୍ୟ ଓ ସଙ୍ଗୀମାନେ
କଳାପାହାଡ଼
ସେନା ନାୟକ
୧ମ ନାଗରିକ
୨ୟ ନାଗରିକ
ମାନସିଂହ
ସଭାସଦ୍
ଭୃତ୍ୟ
ପୁରବାସୀ
୧ମ ପଣ୍ଡା
ଦାସେ
ତଳଗ୍ରେ
କୀର୍ତ୍ତନ ଦଳ
ସୁବେଦାର ହାସିମ୍ ଖାଁ
କେଶୋଦାସ
ପାରିଷଦ
ରତନ (ନାଗରିକ)
କର୍ମବ୍ରୁଷ
ବାଖର ଖାଁ
ଜମିଦାର
୧ମ କଟକବାସୀ
୨ୟ କଟକବାସୀ

ସୁବେଦାର ମୁତକଲକ ଖାଁ
ପାରିଷଦ
କାର୍ଟରାଇଟ୍
ଭରତ
ମୁକୁନ୍ଦଦେବ
୧ମ ଲୋକ
୨ୟ ଲୋକ
୩ୟ ଲୋକ
ରଘୁ
ରହିମ୍
ଦାମ
କରମ୍
ଦରବାରୀ
ପୂଜାବାଲା
ପୂଜକ
ଆଗନ୍ତୁକ (ସୁବାହୁ ସିଂହ)
ଦର୍ଶନାର୍ଥୀ (ଦାସେ)
୧ମ ସନ୍ନ୍ୟାସୀ
୨ୟ ସନ୍ନ୍ୟାସୀ
୩ୟ ସନ୍ନ୍ୟାସୀ
ଦୁର୍ଲ୍ଲଭ
ଅଜିଜ୍
ଭିଖାରୀ

୧ମ ମରହଟ୍ଟା ସର୍ଦ୍ଦାର
୨ୟ ମରହଟ୍ଟା ସର୍ଦ୍ଦାର
୩ୟ ମରହଟ୍ଟା ସର୍ଦ୍ଦାର
୪ର୍ଥ ମରହଟ୍ଟା ସର୍ଦ୍ଦାର
ଚର
୧ମ ଇଂରେଜ ସେନାପତି
୨ୟ ଇଂରେଜ ସେନାପତି
୩ୟ ଇଂରେଜ ସେନାପତି
ଗୋରା କର୍ମଚାରୀ
ଦେଶୀ କର୍ମଚାରୀ
ସାହେବ
ନଗରବାସୀ
୧ମ ଗୋରା ଅଫିସର
୨ୟ ଗୋରା ଅଫିସର
୩ୟ ଗୋରା ଅଫିସର
ସିପାହୀ
ସର୍ଜେଣ୍ଟ
ଜନତା
ଜଣେ କର୍ମୀ
ମାଜିଷ୍ଟ୍ରେଟ୍
ଝାଡୁଦାର
କେଷ୍ଟାର ଟେକର
ନେତା

—ସ୍ତ୍ରୀ—

କଳା
ବସିଥିବା ନାରୀ
୧ମ ଗ୍ରାମ୍ୟ ରମଣୀ
୨ୟ ଗ୍ରାମ୍ୟ ରମଣୀ
୩ୟ ଗ୍ରାମ୍ୟ ରମଣୀ
ନାରୀ ମୂର୍ତ୍ତି
ରାଜଲକ୍ଷ୍ମୀ

●

# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ

(ବାରବାଟିର ଭଙ୍ଗା ଗଡ଼ଦ୍ୱାର ଉପରେ ଜଳୁଛି ଦୀପାଳୀଗୁଡ଼ିଏ । ଗୋଟିଏ ଅଶୋକ ଚକ୍ର ଚିହ୍ନ ଥାଇ ତ୍ରିରଙ୍ଗ ପତାକା ଉଡ଼ୁଛି । ଆଗରେ ତା'ର ଦୁଇ ଦରଜାଗୁଡ଼ିଏ । ନାଗରିକ ତୋରଣ ଭିତରୁ ପତାକା ଓ ଆଲୋକ ଧରି ଆସୁଛନ୍ତି । ତାଙ୍କ ଆଗରେ ବାଜା ବାଜୁଛି—ନାଗରିକମାନେ ସ୍ୱାଧୀନତା ଦିବସ ପାଳନ କରୁଛନ୍ତି । )

ଜନତା—

"ସ୍ୱାଧୀନ ଭାରତ କି ଜୟ
ଭାରତ ମାତା କି ଜୟ
ସ୍ୱାଧୀନ ଉତ୍କଳ କି ଜୟ"

( ଜନତାର ବାଦ୍ୟଧ୍ୱନି କୋଳାହଳ ଭିତରେ ଜୟଧ୍ୱନି କରି ପ୍ରସ୍ଥାନ । ପୁରୁଣା ଗଡ଼ଖାଇର ଖଣ୍ଡି ଭିତରୁ ବାହାରିଲେ ଜଣେ ଅନ୍ଧ ବୃଦ୍ଧ ଲୋକ । ମୁଣ୍ଡର ଧଳା-ବାଳଗୁଡ଼ିକ ଜଟା ହୋଇଯାଇଛି ଏବଂ ପାଦ ପର୍ଯ୍ୟନ୍ତ ଲମ୍ବିଛି । ମୁହଁରେ ଶିରା ପଡ଼ିଯାଇଛି । ଦାଢ଼ୀ ଓ ନଖ ଖୁବ୍ ଲମ୍ବ । ଆଖି ତଳେ ଚକ୍ରା ଓ ବୟସର କଳାଗ୍ଲାନି । ବୁଢ଼ା ବଡ଼ ଧୀରେ ଧୀରେ ଆସି ତୋରଣ ଆଗରେ ଠିଆ ହୋଇ ଦୀପାବଳୀ ଓ ପତାକାକୁ ନିରୀକ୍ଷଣ କଲେ । ହସିଲେ ସ୍ୱର-ଆଡ଼କୁ ଚାହିଁ । ଦୂରରୁ ଜନତାର ଜୟଧ୍ୱନି କ୍ଷୀଣରୁ କ୍ଷୀଣତର ହୋଇ ଆସୁଥାଏ । ଟିକିଏ ଆଗେଇ ଯାଇ ତୋରଣରେ ଗୋଟିଏ ପାଖରେ ଛିଡ଼ା ହୋଇ ପଥର ଦେହରେ ହାତ ମାରିଲେ । ଖଣ୍ଡିଏ ପଥର ମେଲା ହୋଇଗଲା । ତା'ଭିତରୁ ବାହାରି ଆସିଲେ ଆଉ ଜଣେ ବୃଦ୍ଧ । ସେ କଳାଦେହ ଖୁବ୍ ଶକ୍ତିବାନ୍ ପରି ଜଣାପଡ଼ୁଛନ୍ତି । ମାତ୍ର ଠାଏ ଠାଏ ଖଣ୍ଡିଆ ଚିହ୍ନ ଦେଖାଯାଉଛି । ପିନ୍ଧିଛନ୍ତି ନାଲିଲୁଗା । ରୁକ୍ଷ କେଶ—ଦେହ ଫିଙ୍ଗିଲା, ତାକୁଥିବା ବୃଦ୍ଧ ତାଙ୍କୁ ପ୍ରଣାମ କଲେ । )

୧ମ—( ହସି ହସି ) ଶୋଇଥିଲ ଭାଇ ! ତୁମର ଏ ଆନନ୍ଦ ଦିନରେ ମୁଁ ସମ୍ବର୍ଦ୍ଧନା ଜଣାଇବାକୁ ଆସିଲି । ଏତେବେଳେ ତୁମେ କେମିତି ଶୋଇ ରହିଛ ? ଦେଖିଲ—( ଦୀପାଳୀକୁ ଠାରି ଦେଖାଇଲେ )

୨ୟ—( ଗମ୍ଭୀର ମୁଖରେ ଦୀର୍ଘଶ୍ୱାସ ମାରି ଦୀପକୁ ଚାହିଁ ) ହଁ, ଦୀପାବଳୀ, ସେ ତ ଆଉ ମୋ ଜୀବନର ନୂଆ ନୁହେଁ । କେତେବାର ପ୍ରଦୀପରେ ମୋତେ ସଜାଇଛନ୍ତି ଲୋକେ । କେତେ ରଙ୍ଗର କେତେ ପତାକା ଉଡ଼ିଛି ମୋର ମଥା ଉପରେ । ମୋର ଯୌବନ କାଳ ସେ—ତୁମର ହେବୁ ହେଉ ନାହିଁ ?

୧ମ—ହଁ, କିଛି କିଛି ମନେପଡ଼ୁଛି । ଦେଖିଛି ବୋଧହୁଏ କେତେ ଥର ।

୨ୟ—ମୋ ଆଗରେ ତ ତୁମର ଜନ୍ମ । ଗୋଟିଏ ଶତାବ୍ଦୀ ବା କିଛି ବେଶୀ ହେବ ବୋଧହୁଏ । କାଲି ପରି ଲାଗୁଛି । ପାଇକମାନେ ବସାଉଠା କରିବାକୁ ତୁମ୍ଭର ଅଗ୍ରବର୍ତ୍ତି ହେଲେ । ଜଣେ ବ୍ରାହ୍ମଣ—ମନେହୁଏ ରାଜପୁରୋହିତ ତୁମକୁ ନଦୀ କୂଳରୁ ଆଣି ଯତ୍ନରେ ବସାଇଲେ । ଆଜି ତୁମ ମଥାରେ ପାଚିଲା ବାଳ ଜଟ ହୋଇଗଲାଣି । ତା'ର ବହୁପୂର୍ବେ—କେହି କହିପାରିବେ ନାହିଁ ଆଉ ସେ କଥା । କେବଳ ଆଖ ପାଖରେ ଦୁଇ ଜଣ ମାତ୍ର ଅଛିର ସାକ୍ଷୀ ।

୧ମ—କିଏ ସେମାନେ ଭାଇ !

୨ୟ—ସେମାନେ ? ଆହା ! (ଖାଇକୁ ଚାହିଁ) ଏଇ ମୋର ସାଥୀ । ନିର୍ମଳଚନ୍ଦ୍ର କିରଣ ତଳେ ଛାତରେ ତା'ର କେତେ ନାଆ ଖେଳାଇଛି । ପ୍ରଚଣ୍ଡ ରବି ତଳେ କେତେ ରକ୍ତ ବୋଳିଦେଇଛି । କେତେ କଳ ସଙ୍ଗୀତ, କେତେ ବୀର ଗାଥା, କେତେ କରୁଣ ବେଦନ ଶୁଣିଛି ଏଇ ଗଡ଼ଖାଇ । ଆଜି ସେ ଜୀଇଁଥିଲେ କହନ୍ତା ସବୁକଥା । ସେ ଦେଖିଛି ମୋର ବାଲ୍ୟଲୀଳା, ଦେଖିଛି ଯୌବନର ଗୌରବ ଗରିମା ।

୧ମ—ଆଉ ଜଣେ କିଏ ?

୨ୟ—ଟିକିଏ ଦୂରରେ ଅଛନ୍ତି ସେ । ତୁମେ କାଠଯୋଡ଼ି ଦେଖିଛ ?

୧ମ—ହଁ, ଝଡ଼ ବତାସରେ ତା'ର ଧୂଳିକଣା ବେଳେବେଳେ ମୋତେ ଅନ୍ଧ କରିଦିଏ । ପୁଣି ବେଳେ ବେଳେ ଜଳକଣା ବହିଆଣି ମୋ ଦେହ ଶୀତଳ କରେ ଦକ୍ଷିଣା ମଳୟ ।

୨ୟ—ହଁ, ସେହି କାଠଯୋଡ଼ୀ । ପଥର ବନ୍ଧ ମୋର ବାଲ୍ୟସାଥୀ । ସେ କହିବ ସବୁ । ଆଉ ଜଣେ ଅଛି ବୃଦ୍ଧ ଅଛନ୍ତି । ସେ ତପସ୍ୟା କରୁଥିବେ—ଏଇ ଉତ୍ତରକୁ ଚାହିଁ ।

୧ମ—ଓ ମହାନଦୀ ?

୨ୟ—ହଁ, ସେ ମଧ୍ୟ ମୋର ଅଙ୍ଗ-ସୌଷ୍ଠବ ଦେଖିଛନ୍ତି । ମୁଁ ସେତେବେଳେ ଏପରି ନ ଥିଲି । ଦେହ ମୋର ଖଣ୍ଡ ବିଖଣ୍ଡିତ ହୋଇ ନ ଥିଲା । ଦୀର୍ଘ ପ୍ରସ୍ଥରେ

ମୁଁ ଥିଲି ପ୍ରକାଣ୍ଡ । ସେତେବେଳେ ମଧ୍ୟ ବନ୍ଧୁବାର ଦୀପାଳି ଜାଳିଛୁ । ଆଜିର ଏ ତ ସାମାନ୍ୟ । ତୁମେ ଦେଖି ନାହିଁ—ଆଧାଲୋକରେ ଚନ୍ଦ୍ର ମଳିନ ଦିଶେ । ତା'ର କଥା ଗୁଜ୍, ସହସ୍ର ସହସ୍ର ଦୀପମାଳା ସାରା ରାତ ଜଳୁଥାଏ । ଆଉ ଜୟଧ୍ୱନି—ସେ ତ କୋଟି କଣ୍ଠରୁ ଶୁଭୁଥାଏ । ମୁଁ ନାଚ ଉଠେଁ, ତେଇଁ ଉଠେଁ, ଫୁଲି ଉଠେଁ । ସେଇ ଜୟଧ୍ୱନି ସଙ୍ଗେ କଣ୍ଠ ମିଶାଇ ପ୍ରତିଧ୍ୱନି ଶୁଣାଏଁ । ଏଇ ଯେ ଦେଖୁଛ ଗୃହପାଚେରି ପର୍ବତମାଳା—ଏମାନଙ୍କୁ ମୋର କଣ୍ଠର ପ୍ରତିଧ୍ୱନି ଶୁଣାଇ ଚମକାଇ ଦିଏ । କିନ୍ତୁ, କିନ୍ତୁ ଆଜି ସେଦିନ ତ ଆଉ ମୋର ନାହିଁ !

୧ମ—ଏମିତି ଆନନ୍ଦ ଆଉ କେବେ ପାଇଥିଲେ ?

୨ୟ—ଆନନ୍ଦ ପାଇଛୁ—ଦୁଃଖ ବି ପାଇଛୁ । ପରଦେଶୀ ବାର ବାର ଆସି ଦୀପ ଜାଳିଛନ୍ତି, ପତାକା ଉଡ଼ାଇଛନ୍ତି, ଜୟଧ୍ୱନି କରିଛନ୍ତି । ମୁଁ ସ୍ୱାଗି ପଡ଼ିଛୁ, ପ୍ରତିଧ୍ୱନି ଦେଇ ନାହିଁ । ମୋ ସାଙ୍ଗରେ ନବଚନ୍ଦ୍ର ପ୍ରାସାଦ; ଯାହାକୁ ମୁଁ ଜଗିରହିଥିଲି ଆଦରରେ—ସେ ଚୂନା ହୋଇଯାଇଛୁ । ଆମଣ ଦେହରୁ ହାଡ଼ ମାଂସ ନେଇ କେତେ ଘର ତୋଳା ହୋଇଛୁ—ଭିତରକୁ ଯାଇ ଦେଖ ।

୧ମ—କିନ୍ତୁ ଭାଇ ! ଆଜି ଏ ପିଲାଏ ଯେ ଜୟଧ୍ୱନି କରୁଛନ୍ତି; ଏଥିରେ ବିଶେଷତ୍ୱ ଅଛି ।

୨ୟ—ବିଶେଷତ୍ୱ ?

୧ମ—ଚାହିଁ ଦେଖ । ସେଇଥିପାଇଁ ତ ଉଠାଇଲି ।

୨ୟ—(ପାତାଳକୁ ଚାହିଁ) ଆରେ, ଏ ପତାକା ! ବନ୍ଧୁଦିନର ସ୍ମୃତି । ନା-ନା ଦିନର ତ ନୁହେଁ, ଯୁଗ ଯୁଗର ସ୍ମୃତି ତେଇଁ ଉଠିଛି ଅନ୍ତର ଭିତରେ ମୋର । ଏ ତ ପ୍ରିୟଦର୍ଶୀ ଅଶୋକଙ୍କ ଚକ୍ର ଚିହ୍ନ । ଏ ପତାକା ତ ସେଭଳି ନୁହେଁ ।

୧ମ—ନା, ସେହି କଥା ଦେଖି ତ ସମ୍ବର୍ଦ୍ଧନା ଜଣାଇବାକୁ ଆସିଲି । ପିଲାଏ ଆମର ଆଜି ସ୍ୱାଧୀନ । ଏ ତାଙ୍କର ନିଜର ପତାକା । ଏ ପ୍ରଦୀପର ଶିଖା ଭିତରେ ଜଳି ଉଠିଛି କେତେ ଶହୀଦଙ୍କର ଆତ୍ମା । ଦେଖ ! ତୁମ ପିଲାମାନଙ୍କର ଖୁସି ।

୨ୟ—(ହସି) ଜାଣି ତନ ଥିଲି । ମନଦୁଃଖରେ ଶୋଇ ରହିଥିଲି ଆଗପର । ଗୋଟି ଗୋଟି ହୋଇ ଜନ୍ମଦିନରୁ କେତେ କଥା, କେତେ ସୁଖ ଦୁଃଖ ତେଇଁ ଉଠୁଛି ମନରେ ମୋର ।

୧ମ—ଇଚ୍ଛାହୁଏ, ସବୁ ଶୁଣନ୍ତି ।

୨ସ୍ୱ—ସବୁ ଶୁଣିବ ? ସେ ଇତିହାସ ଶୁଣାଇବାକୁ ମୋର ପ୍ରବଳ ଇଚ୍ଛା । କିନ୍ତୁ କାଳ କାହିଁ ଯେ, ଗୋଟି ଗୋଟି ସବୁ ଶୁଣିବ ବା ଶୁଣାଇବ ? ସବି ଆଉ ଅଧିକ ନାହିଁ । ମୋତେ ଆତ୍ମଗୋପନ କରିବାକୁ ହେବ ।

୧—ମୋତେ ମଧ୍ୟ ।

୨ସ୍ୱ—ତେବେ ଠିକେ ଠିକେ ଶୁଣ ।

୧ମ—କହ ତେବେ ଭାଇ !

୨ସ୍ୱ—(ଭାବି) ନା, ନା, ଏକା ତୁମକୁ କହି କିଛି ଲାଭ ନାହିଁ । ଚାଲ, ଭିତରକୁ ଚାଲ । ଏ ଆନନ୍ଦ, ଏ ଉତ୍ସବ ମୋ ଘରେ କରୁଛି କିଏ ?

୧ମ—ଦେଶର, ଜାତିର ବର୍ତ୍ତମାନ ନେତା ।

୨ସ୍ୱ—ତେବେ ସେଠିକି ଚାଲ, ସବୁ କହିବି ।

୧ମ—କିନ୍ତୁ ସେ ଯେ ମାନବ । ଆମ୍ଭମାନଙ୍କୁ ଦେଖିନେବ ।

୨ସ୍ୱ—ତେବେ ?

୧ମ—ନା ଶୋଇଥିବ ବୋଧହୁଏ ଏତେବେଳେ, ଉଠାଇବା କିପରି ?

୨ସ୍ୱ—(ହସି) ଶୋଇଥିବ ? ଶୋଇଥିବ ସେ ? ଉତ୍ତମ, କହିବାର ତେବେ ପ୍ରୟୋଜନ ନାହିଁ କିଛି । କଥାଠାରୁ ସ୍ୱର୍ଗୀୟ ଅତୀତକୁ ସେ ଦେଖିପାରିଲେ ଅନ୍ତରରେ ତାର ଅଧିକ ଗୁଣ୍ୟାପାତ ହେବ, ଚାଲ !

୧ମ—ସବି ଯେ ଅଳ୍ପ ଅଛି ।

୨ସ୍ୱ—ଅଳ୍ପ ଭିତରେ କଳ୍ପର କଥା ଠିକେ ଠିକେ ସ୍ୱପ୍ନରେ ପୁରାଣ ଚିତ୍ର ଉଠିବ ଆଖି ଆଗରେ ତାର । ପୂର୍ବ ଗୌରବ, ପୂର୍ବ କୀର୍ତ୍ତି ଦେଖିଲେ ସେ ଦେହଭାଇ ଗଢ଼ିନେବ । ଭବିଷ୍ୟତ ସ୍ୱାଧୀନ ରାଜ୍ୟ ଅଟଳ ରଖିବ । ଆସ, ଆଉ ବିଳମ୍ବ କର ନାହିଁ ।

(ଦୁହେଁ କିଲ୍ଲା ଭିତରକୁ ଗଲେ)

## ଦ୍ୱିତୀୟ ଦୃଶ୍ୟ

(କିଲ୍ଲାର ଫାଟକଠାରୁ ସର୍କିଟ୍ ହାଉସ୍ ପର୍ଯ୍ୟନ୍ତ ପଡ଼ିଥିବା ରାସ୍ତା)

୧ମ—ଏ ମଧ୍ୟ କଅଣ ସେଇ ପୁରୁଣା ରାଜମହଲ ଅଂଶ ?

୨ସ୍ୱ—ନା ନା, ଏ ତ ଧର୍ମଚନ୍ଦ୍ର ଶାଳାପୁର । ଭାଙ୍ଗିଯାଇ ତଳ ଅଂଶ ମାତ୍ର ରହିଛି, ପାଖରେ ତାର ଏହି ଘର । ମୋର ଦେହର ଅଂଶରେ ଚଉଅଣ କଣ୍ଠିକ୍ତ

ବିଦେଶୀ ବିଜେତା । କେତେ ମନ୍ତ୍ର ପରାମର୍ଶ, କେତେ ସୁଖ ଦୁଃଖ ଭାବନା, ଏହି ଘରେ ମୁଁ ଦେଖିଛି ।

୧ମ ଅନ୍ୟାନ୍ୟ ଘରଗୁଡ଼ିକ ?

୨ୟ—କେଉଁଟିରେ ମୋର ଅଙ୍ଗ ପ୍ରତ୍ୟଙ୍ଗ, କାହିଁରେ ମୋର ବନ୍ଧୁ ପ୍ରାସାଦର ଅଂଶ ସଂଯୋଜିତ । ଆଗକୁ ଚାଲ !

୧ମ—ଏଇ ଯେ—ଗୋଟିଏ ଦେବାଳୟ ଦିଶୁଛି ନିଶ୍ଚୟ ?

୨ୟ—ଦେବାଳୟ ? କାହିଁ ? ନା ନା—ସେ ମୁସଲମାନ ବିଜେତାଙ୍କର ଧର୍ମମସଜିଦ୍ । ଉତ୍କଳର ସ୍ୱାଧୀନ ରାଜା ନୃପକେଶରୀ ନଗରକୁ ଆଣିଥିବା ଚଣ୍ଡୀମୂର୍ତ୍ତି ଆଉ ଏଠାରେ ନାହାନ୍ତି । ତାଙ୍କର ଆସ୍ଥାନ ନିଶ୍ଚିହ୍ନ ହୋଇଗଲାଣି । ଲୋକେ ପାସୋରି ଦେଲେଣି ସେ କଥା । କେବେ ଥରେ ବାରାଣସୀକୁ ଦୃଷ୍ଟି ପକାଇବ । ତାଙ୍କର ମୌଳିକ ନାମ ଥିଲା ବାରାଣସୀ । ନୃପକେଶରୀ ସେହି- ଠାରେ ଗଡ଼ ବାନ୍ଧିଥିଲେ । ମୋରି ଭଳି କ୍ଷତ ବିକ୍ଷତାଙ୍ଗ ସେଠାରେ ପଡ଼ି ସଢ଼ୁଛନ୍ତି ଆଜି ।

୨ୟ—ହଁ, ତୁମର ଜନ୍ମ ନାହିଁ । ମୁଁ ତୁମ ଜନ୍ମବେଳର କିଛି ଆଗରୁ କହିଯିବି ଆଜି । ମୋର ଜନ୍ମଦିନର କଥା । ତୁମେ ଯେପରି ଆଜି ମୋଠାରୁ ମୋ ଜନ୍ମକଥା ଶୁଣୁଛ, ମୁଁ ମଧ୍ୟ ଏହି ତପାଚରଣରତ ମହାନଦୀଙ୍କଠାରୁ ମୋ ଜନ୍ମର ପୂର୍ବ ଇତିହାସ ଦିନେ ଶୁଣିଥିଲି । ଫଳ ନାହିଁ ଏତେ କଥା କହି । ମୁଁ ମୋର ଜନ୍ମ ବୃତ୍ତାନ୍ତ ଫୁଟାଇବି ଛାୟା ରୂପରେ । ଆସ, ତୁମେ ମଧ୍ୟ ସେହିଠାରେ ଆଇ ସବୁ ଦେଖିନେବ ।

୧ମ—ଚାଲ ଭାଇ, ବେଳ ଗଡ଼ିଯାଉଛି ଯେ !

(ଉଭୟେ ଚାଲିଗଲେ)



## ତୃତୀୟ ଦୃଶ୍ୟ

(କିଲ୍ଲାର ଅଭ୍ୟନ୍ତର । ସର୍କିଟ୍ ହାଉସ୍ ବା ଅତିଥିଶାଳାର ଗୋଟିଏ ପ୍ରକୋଷ୍ଠ । ଆଧୁନିକ ସାଜସଜ୍ଜାରେ ଘରଟି ସୁସଜ୍ଜିତ । ଘରେ ଖଣ୍ଡିଏ ପଲଙ୍କ । ପଲଙ୍କରେ ମଶାରି ଟଣାଯାଇଛି । ଗୋଟିଏ କଣରେ ଖଣ୍ଡିଏ ଟେବୁଲ । ତା' ଉପରେ ଗୁଡ଼ିଏ ଫାଇଲ । ଦୁଇଖଣ୍ଡ ଚୌକି ପଡ଼ିଛି ।

ଶୋଇଛନ୍ତି ଓଡ଼ିଶାର ମୁଖ୍ୟନେତା । ନବୀନ ଫିଟାର ପ୍ରବେଶ କଲେ ଦୁଇ ବୃଦ୍ଧ । ପ୍ରଥମ ବୃଦ୍ଧ ଖାଟକୁ ନିର୍ଦ୍ଦେଶ କରିଦେଲେ—ଦ୍ୱିତୀୟ ଜଣକ ଧୀରେ ମଶାରି ଟେକି ଦେଖିଲେ ଯେ ନେତା ସୁପ୍ତ । ସେ ନୀରବ । ମନ୍ତ୍ରୋଚ୍ଚାରଣ କରି ନେତାଙ୍କର ମସ୍ତକଠାରୁ ପାଦ ପର୍ଯ୍ୟନ୍ତ ଓ ଆଖି ଉପରେ ହାତ ବୁଲାଇଲେ—ପୁଣି ମଶାରି ପକାଇଦେଲେ । ପ୍ରଥମଙ୍କୁ ଇଙ୍ଗିତ ଦେଲେ ଦୂରରେ ରହିବାକୁ ସହସା ଘର ଅନ୍ଧକାର ହେଲା । ଗୋଟିଏ କୋଣରେ ଦେଖାଗଲା ଗୋଲାକାର ଆଲୋକ ସମ୍ପାତ—ଦୂରରେ ଶୁଭିଲା ନାଗରା ଶବ୍ଦ । ଅନ୍ଧକାର ମଧ୍ୟରେ ଦେଖାଗଲା ନେତା ସ୍ୱପ୍ନ ଦେଖୁଛନ୍ତି—ମର୍କତ-କେଶରୀଙ୍କ ଦରବାର । ମର୍କତ କେଶରୀ ସଭାସଦ୍‌ସହ ସମାସୀନ । ପୁର୍ବକାଳର ଖଡ଼ଗ, ଅପସର ଇତ୍ୟାଦି ପଡ଼ିଛି । ସମ୍ମୁଖରେ ଦେବଦାସୀ ନୃତ୍ୟ କରୁଥିଲେ । ନାଗରା ଧୀରେ ଧୀରେ ଶୁଭୁଥିଲା—କ୍ରମେ ନିକଟବର୍ତ୍ତୀ ହେବାପରି ମନେହେଲା ଓ ଶବ୍ଦ ଜୋର ହେଲା । )

ମର୍କତ କେଶରୀ—କି ନାଗରା ଶବ୍ଦ ? ପ୍ରତିହାରୀ ! (ନୃତ୍ୟ ବନ୍ଦ ହେବାକୁ ନିର୍ଦ୍ଦେଶ)

ପ୍ରତିହାରୀ—(ଅଭିବାଦନ କରି) ମହିମା !

ମର୍କତ—କାହିଁକି ନାଗରା ବଜାଯାଉଛି ବୁଝି ଆସ ।

(ମହସା ମନ୍ତ୍ରୀଙ୍କ ପ୍ରବେଶ)

ମନ୍ତ୍ରୀ—(ପ୍ରଣାମ କଲେ)

ମର୍କତ—ମହାମନ୍ତ୍ରୀ ! ନାଗରାର କାରଣ କଣ ?

ମନ୍ତ୍ରୀ—ମହାପ୍ରଭୁ ! ଚିତ୍ରୋତ୍ପଳାର ଶାଖା ବଡ଼ ପ୍ରବଳ ହୋଇ ଜଳ ଲଙ୍ଘି ବଢ଼ୁଛି । ସାଧାରଣତଃ ମୂଳ ନଦୀଠାରୁ ଶାଖାର ସ୍ରୋତ ଅଧିକ । ଏକ ପାର୍ଶ୍ୱରେ ମହାନଦୀ ଚିତ୍ରୋତ୍ପଳା—ଅପର ପାର୍ଶ୍ୱରେ କାଠଯୋଡ଼ି ଏତେ ବେଗରେ ବଢ଼ୁଛନ୍ତି ଯେ, ମନେହୁଏ ଯଦି ଆଉ ଦୁଇ ଦିନ ଏହିପରି ପାଣି ଫୁଲିଉଠୁଥିବ ତେବେ କଟକର ଅବସ୍ଥା ଶୋଚନୀୟ ହୋଇପଡ଼ିବ । ବାରବାଟୀ ଗ୍ରାମବାସୀ ବନ୍ୟାରୁ ରକ୍ଷା ପାଇବା ପାଇଁ ଗ୍ରାମ ଦେବୀଙ୍କ ଟେମକ ଦେଇ ପାଳିକରି ଜଗି ରହିଛନ୍ତି ।

ମର୍କତ—କଟକ ରକ୍ଷାର ଆଉ କିଛି ଉପାୟ ନାହିଁ ?

ମନ୍ତ୍ରୀ—ସେହି କଥା ପରାମର୍ଶ କରିବାକୁ ଆସିଛି ମହିମା । ଶୀଘ୍ର କିଛି ଉପାୟ ନ କଲେ କଟକ ଧ୍ୱଂସ ହୋଇଯିବ । ମହାନଦୀ ଆଉ କାଠଯୋଡ଼ିର ଜଳ ସୁଯୋଗ ହେତୁରୁ ନଗରଟି କ୍ରମେ ଧନଜନରେ ବଢ଼ି ଆସୁଥିଲା । ବାଣିଜ୍ୟର ଏ ଗୋଟିଏ ପ୍ରଧାନ କେନ୍ଦ୍ରସ୍ଥଳୀ ରୂପେ ପରିଣତ ହୋଇଯାଇଛି ।

ମର୍କତ ବୁଢ଼ବଳିଆକ ନଦୀକୁ ବାଣିଜ୍ୟର ଉପଯୋଗୀ କରିବା ସଙ୍ଗେ ସଙ୍ଗେ ନଗର ରକ୍ଷା ପାଇଁ ଭବିଷ୍ୟତ ବ୍ୟବସ୍ଥା ଆଜଠୁଁ ନ କଲେ ରାଜ୍ୟର ବିଶେଷ କ୍ଷତି ହେବ ସିନା ! ଆପଣ କଣ ପରାମର୍ଶ ଦେଉଛନ୍ତି ?

ମନ୍ତ୍ରୀ—ବିଶ୍ୱକର୍ମାଙ୍କ ସଙ୍ଗେ ପରାମର୍ଶ କରି ବନ୍ଧ ବାନ୍ଧିବାକୁ ହେବ ।

ମର୍କତ—କିନ୍ତୁ କାର୍ଯ୍ୟ ସୁକଠିନ । ଦୁଇ ନଦୀର ସ୍ରୋତର ଗତି ଆଉ ପ୍ରଖରତା ଭିନ୍ନ ଭିନ୍ନ । ତେଣୁ ସ୍ରୋତର ଗତି ଏବଂ ବେଗ ପରିମାଣରେ ବନ୍ଧର ଗଠନ ଆବଶ୍ୟକ ।

ମନ୍ତ୍ରୀ—କୋଣ ପଥ ଗଣନା ପ୍ରଥମ କର୍ତ୍ତବ୍ୟ । ସେହି ଅନୁସାରେ ବନ୍ଧ ତିଆରି କଲେ ବାଣିଜ୍ୟ ବୋଇତ ଯିବା ଆସିବା ଲାଗି ସବୁଦିନେ ସୁବିଧା ହେବ ମହିମା ! ଆଉ ଭବିଷ୍ୟତ ବନ୍ୟାଭୟ ମଧ୍ୟ ରହିବ ନାହିଁ ।

ମର୍କତ—କିନ୍ତୁ ବହୁତ ପଥର ଆବଶ୍ୟକ ହେବ ତ ?

ମନ୍ତ୍ରୀ—ନଗର ଆମକୁ ଯୋଗାଇ ପାରିବ ପ୍ରଭୁ ! ଆଉ ମୋ ମତରେ ରାଜକୋଷରୁ ମଧ୍ୟ ତ ଅର୍ଥ ବ୍ୟୟ ନ କରି, ଜାଭା ଚୀନ, ବାଲି, ସୁମାତ୍ରା ପ୍ରଭୃତି ଦେଶରୁ ଯେଉଁ ବାଣିଜ୍ୟ କର ଆଦାୟ ହେଉଛି—ତାହା ବନ୍ଧ ନିର୍ମାଣରେ ଲାଗିବ । ମହିମାଙ୍କ ଏ କୀର୍ତ୍ତି ଯୁଗଯୁଗର ଭବିଷ୍ୟତ ବଂଶ ଘୋଷଣା କରିବେ । ମହାରାଜ ମର୍କତ କେଶରୀଙ୍କ ନାମ ଏ ପଥରବନ୍ଧ ସଙ୍ଗେ ଅମର ହୋଇ ରହିବ ।

ମର୍କତ—ମୁଁ ନିଜେ ଥରେ ବନ୍ୟା ଦେଖି ଆସିବା ବିଚାରୁଛି । ଆପଣ ବିଶ୍ୱକର୍ମାଙ୍କୁ ସେହିଠାରେ ସାକ୍ଷାତ କରିବାକୁ ସମ୍ବାଦ ଦିଅନ୍ତୁ ।

ମନ୍ତ୍ରୀ—ମହିମା କେତେବେଳେ ବିଜେ ହେବେ ।

ମର୍କତ—ଏଇ ଯାଙ୍ଗେ ସାଙ୍ଗେ । ଏ କାର୍ଯ୍ୟରେ ବିଳମ୍ବ ଅନୁଚିତ । ପ୍ରଜାକୁଳ ବିପନ୍ନ । ରାଜପୁରୀରେ ଅବସର ବିନୋଦ ଅସମ୍ଭବ ।

ମନ୍ତ୍ରୀ—ମହିମା ଦେବୋପମ । ହାଡ଼ୋଲା ପ୍ରସ୍ତୁତ କରାଏଁ ।

(ମନ୍ତ୍ରୀ ଚାଲିଗଲେ)

(ମହାରାଜ ଆସନ ତ୍ୟାଗ କଲେ । ପାର୍ଶ୍ୱସଦ୍ ସମସ୍ତେ ଠିଆହେଲେ ଛାମୁଖୁଣ୍ଟିଆ ପଥ ପ୍ରଦର୍ଶକ ହୋଇ ଡାକିଲା ।)

ଖୁଣ୍ଟିଆ—ଛାମୁ ଘରଢ଼, ଛାମୁ ଘରଢ଼, ଛାମୁ ଘରଢ଼ ।

(ପଟ ତଳି ପଡ଼ିଗଲା)

# ଚତୁର୍ଥ ଦୃଶ୍ୟ

(କାଠଯୋଡ଼ା ବନ୍ଧହୁଛି—ବଳ ଲଙ୍ଘି ପାଣି ସୁଅ ଚାଲିଛି । ଦୁଇଖଣ୍ଡି କାଠି ହାତରେ ଧରି ଠିଆ ହୋଇଛନ୍ତି ବିଶ୍ୱକର୍ମା । ସେ ବନ୍ଧ ଦେଖି, ପାଣି ଓ ସୁଅରେ ଗତି ଲକ୍ଷ୍ୟ କରୁଛନ୍ତି । କପାଳରେ ଚିନ୍ତାର ରେଖା । କେବେ କେବେ ସ୍ରୋତକୁ ଲକ୍ଷ୍ୟ କରି ବାଲିରେ ଗାର ଟାଣୁଛନ୍ତି । ବଡ଼ ଚିନ୍ତାନ୍ୱିତ ପରି ଜଣାପଡ଼ୁଛନ୍ତି । ରହି ରହି ପଛକୁ ଚାହୁଁଛନ୍ତି, ଯେପରି କାହାର ଅପେକ୍ଷାରେ । କିଛି ସମୟ ପରେ ଆସିଛି ତାଙ୍କ ଝିଅ କଳାବତୀ । ହାତରେ ତାର ଖଣ୍ଡିଏ ପୁରୁଣା ପୋଥି । କଳାବତୀକୁ ଦେଖି ବିଶ୍ୱକର୍ମା କହିଲେ—)

ବିଶ୍ୱକର୍ମା—ଆଣ, ଆଣ ଝିଅ ! ଦେଖେଁ କୋଉ ପୋଥିଟା ଆଣିଛୁ ?

କଳା—ଦେଖ, ଜେଜେବା'ଙ୍କ ହାତଲେଖା ପରା କହିଥିଲ ?

ବିଶ୍ୱ—ଆଲେ ମା, ତୋ ଜେଜେବା' କଅଣ ଏଇ ଖଣ୍ଡିକ ଲେଖିଛନ୍ତି ? ଇମିତି ତ ପଣେ ପୋଥି ଥିବ । (ପୋଥି ପଟା ଦେଖି) ହଁ, କଳାବତୀ ମୋର କଅଣ ଅଜାଣିବାର ଝିଅ ?

କଳା—ଭାଗବତ ଗାଦି ବାଛୁ ବାଛୁ ମୁଁ ବୋଇଲି ବାପା ପାଣି ମାପି ଯାଇଛନ୍ତି ତ, ଏଇ ପୋଥି ହୋଇଥିବ ।

ବିଶ୍ୱ—ହଁ ଏଇଥିରେ ସବୁ ଅଛି । ରଘୁ ମହାରଣାକୁ ଡାକ ଆସିଥିଲି । ମଠୁଆଟେ ବଡ଼ । ହଉ ହଉ, ତୁ ଦେଖିଲୁ ଝିଅ, ମୋ ବୁଢ଼ା ଆଖି କାଳେ ଭୁଲ୍ ହୋଇଥିବ ! ସୁଅ ମୋଡ଼ ଏଇ ଡାହାଣ ପାଖ ନାଁଯାଁ ଖାଉ ନାହିଁ ?

କଳା—(ହସି) ହଁ ବାପା, ତମ ଆଖିରେ ପୁଣି ଭୁଲ୍ ହବ ? (ମହାରଣା ପ୍ରବେଶ) ହେଇଟି, କଳା ଆଇଲେଣି ତ ।

ବିଶ୍ୱ—ରଘୁ ! ଆଇଲୁ । ଆରେ ଦେଖିଲୁ, ଗାଳି ସୁଅ ମୋଡ଼ଟାକୁ ବାଆଁ ଡ଼ାହାଣ ଜାଗିଦେ । ଲେଖନ ପଥର ଆଣିଛୁ ?

ରଘୁ—(ଲେଖନ ପଥ କାଢ଼ିଲା) ହଁ, ତୁମେ ଆଗେ ଆଗେ ଚାଲ । ଆଉ ଟିକେ ଆଗ ବନ୍ଧ ନ ଗଲେ ଠିକଣା ହବ ନାହିଁ, ଝିଅ ଯାଉ ଘରକୁ ।

ବିଶ୍ୱ—ନାହିଁ ଆସୁ, ଆସୁ ସେ । ତାର ଶିଖିବାକୁ ବଡ଼ ମନ ।

ରଘୁ—ଭାଇ, ମହାରାଜ ତ ଆଜ୍ଞାକଲେ । ବାକି ଯେଉଁ ଭଲ ପଥର ହେଲେ ଏ ବନ୍ଧ କାଳ କାଳକୁ ରହିବ, ତାକୁ ବାଛିଲେ ସିନା !

ବିଶ୍ୱ—ଆଗ, ଲେଖନରେ ଦାଗ ଦିଏଁ, ମୁଁ କାଲେ ଯାଇ ପଥର ବରାଦ କରିଆସିବି । ଦେଖିଲୁ ଦେଖିଲୁ ଝିଅ, ପାଣିଟା ଏଇଠି ଭଉଁରୀ ଖାଉଛି କରେ ?

କଳା—ବଡ଼ ଭଉଁରୀଟେ ବାପା । କାଠି କୁଟା ସବୁ ! ଘାଉଁରୁଛି ଏଠି ।

ରଘୁ—ପାଣି ଢେଉର ପାଖରୁ ଖାଇବ ପେଟକୁ ଟାଲମାର ମଟାଳିଆ ମାଟି କାଟି ଯାବୁ ନାହିଁ ଏଇଠି ।

ବନ୍ଧୁ—ହଁ ।ଦେ ଏଇଠି ଗୋଟେ ବୁରୁଜ ଜାଗିଦେ । ଫେର ଭୂଇଁ ମାପକର ପଣ୍ଡିତଙ୍କ କରନବା ଯେ ! ଚାଲ ଆଗକୁ ଚାଲ ।



## ପଞ୍ଚମ ଦୃଶ୍ୟ

(ନରାଜ ପାହାଡ଼ । ପାହାଡ଼ରେ ଗ୍ରେଟ ମାରୁଥିବା ଜଣେ ଜଙ୍ଗଲବାସୀ । କିଛି ଦୂରରେ ହଣା ହୋଇ ପଡ଼ିଥିବା ଖଣ୍ଡେ ପଥର ଉପରେ ବସିଛି ଜଣେ ରମଣୀ । ପାଖରେ ତାର ଟାଙ୍ଗିଆ—ସେ ଝାଳ ପୋଛୁଛି । କେତେକ ସମକାଳୀୟ ସ୍ତ୍ରୀ ଓ ପୁରୁଷ ଠାବେ ଠାବେ କାମରେ ଲାଗିଛନ୍ତି । ଗୀତ ଗାଇ ଗାଇ ଜଣେ ବିନ୍ଧାଣୀ ଆସିଲେ ।)

ବିନ୍ଧାଣୀ—(କାଠ ଗଜରେ ପଥର ମାପି) ବାଃ, ବଡ଼ ଠିକଣା ଜର କାଟୁଛରେ ପିଲାଏ । ଆଜି ଏତିକି କାଟିଛ ?

ବସିଥିବା ନାରୀ—ନାଇଁ ଆଜ୍ଞା, ସକାଳ କଟା ପଥର ଡଙ୍ଗାରେ ନେଇ ଦେଇ କରି ବନ୍ଦକୁ ଗଲାଣି । ସେ ଏ ଓଳର ।

(କେତେ ଜଣ ଖାଇବା ନେଇ ଆସିଲେ)

ବିନ୍ଧାଣୀ—ହଉ ହଉ, କାମ ସେତିକିରେ ବନ୍ଦ ଥାଉ । ହେଇଟି ଆସିଗଲାଣି, ମନେ ଲାଗୁଛି ମହାରାଜାଙ୍କ ଘରୁ ତମ ପାଇଁ ଖଜା ପିଠା ପଠାହୋଇଛି ।

(ହାଣୁଥିବା ଲୋକେ କାମ ବନ୍ଦକଲେ)

ଶ୍ରମିକ—(ଝାଳ ପୋଛି) ଓଃ, ପେଟ ଜଳୁଥିଲା, ବାଙ୍କ ସାଆନ୍ତ । ମହାରଜା ପଣ୍ଡା ଚଢ଼େଇ ପେଟ ଚହଲିବା ବାଲା ।

(ଗୋଟିଏ କଣ ଶବ୍ଦ ହେବାରୁ ସମସ୍ତେ କାମ ଛାଡ଼ି ଏକାଠି ହୋଇଗଲେ । ଭାରୁଆ ଭାର ଥୋଇଲା ।)

ଭାରୁଆ—ଚଣ୍ଡୀ ପରସନୀ ଭୋଗ । ପଥୁରିଆମାନେ ଖାଇବେ ବୋଲି ମହାରଜା ପଠେଇଛନ୍ତି । ନିଅ, ସବୁ ଭୋଗ ପାଅ ।

ଜଣେ—ହଉ, ମହାରାଜାଙ୍କ ଜୟ ହେଉ ।

ସମସ୍ତେ—ମହାରାଜାଙ୍କର ଜୟ ହେଉ ।

ଅନ୍ୟ ଜଣେ—ଆରେ, ଭୋଗ ତ ଥୁଆହେଲାଣି । ପାଇବା ତ ସବୁ । ଆସ ଘଣ୍ଟାଏ ମଉଜ କରିନେବା । ଆସ ଲୋ ସବୁ । ମାଦଳ କାହିଁ ?

୨ୟ—ସେଇ ଗଛ ଡାଳରେ । ଆଣୁଛି ରହ । (ଗ୍ଭଲି ଯାଇ ମାଦଳ ଆଣି ବଜାଇ ବଜାଇ ଆସିଲା) ହଅ ସବୁ ନାଚ ।

(ବାଜା ବାଜିଲା । ସମସ୍ତେ ତାଳ ଦେଇ ଗୀତ ଗାଇ ଗାଇ ନାଚଲେ ।)

—ପଟ୍ଟକ୍ଷେପ—



# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

(ବାରବାଟି ଦୁର୍ଗ ସମ୍ମୁଖର ପ୍ରମୋଦ ଉଦ୍ୟାନ । ଉଦ୍ୟାନଟି ପୁରୁଣା ଧରଣର ଆଭିଜାତ୍ୟ ସେନ ସୁସଜ୍ଜିତ । ମଧ୍ୟରେ ଗୋଟିଏ ଜଗନ୍ନାଥ ମନ୍ଦିରର ଶ୍ଲେଟ ପ୍ରତିକୃତି । ବସିବା ସ୍ଥାନର ପାର୍ଶ୍ୱରେ ଝୁଣ୍ଟିଆ, ତରୁଣିଅ, ବାଙ୍ଗୁଆ—ନିଯୋଗ ଇତ୍ୟାଦି ନିଯୋଗମାନେ ଠିଆହୋଇ ହାସ୍ୟକୌତୁକରେ ରତ ଥିଲେ । ପଟ୍ଟ ଉତ୍ତୋଳିତ ହେବା ବେଳକୁ ସେଠାରେ ଘନ ଘନ ଘଣ୍ଟା ବାଜି ଉଠିଲା ଓ କାହାଳୀ ଶୁଭିଲା । ପରେ ପରେ ଭାଟ ଆସି ଦଣ୍ଡାୟମାନ ହେଲା । ନିଯୋଗମାନେ ନୀରବ ହୋଇ ନିଜ ସ୍ଥାନରେ ବସିଲେ—ଭାଟ ରାଜପ୍ରଶସ୍ତି ପାଠ କଲା ।)

**ଭାଟ**—"ବୀର ଶ୍ରୀ ଗଜପତି ଅନଙ୍ଗଭୀମ ଦେବ ଭୂତ ଭୈରବ ସାଧୁ ଶାସନୋତ୍କୀର୍ଣ୍ଣ ମହାରାଜ ବିଜେ........ସାବଧାନ, ସାବଧାନ, ସାବଧାନ........

(ପ୍ରବେଶ କଲେ ଅନଙ୍ଗଭୀମ ଦେବ ଓ ବଙ୍ଗର ସିଂହାସନଚ୍ୟୁତ ରାଜା ଲକ୍ଷ୍ମଣ ସେନ । ଲକ୍ଷ୍ମଣ ସେନ ଚାରିଆଡ଼କୁ ଦୃଷ୍ଟି ଦେଉଥାଆନ୍ତି ।)

**ଅନଙ୍ଗ**—(ସ୍ଥାନ ନିର୍ଦ୍ଦେଶ କରି, ବସିବା ହୁଅନ୍ତୁ ।

**ଲକ୍ଷ୍ମଣ**—(ମଧ୍ୟବର୍ତ୍ତୀ ପୁଷ୍ପ ମନ୍ଦିରର ପ୍ରତିକୃତି ନିକଟକୁ ଯାଇ) ଏ କଣ ଶ୍ରୀ ମନ୍ଦିରର ପ୍ରତିକୃତି ?

**ଅନଙ୍ଗ**—(ନିକଟକୁ ଆସି) ହଁ, ପରମ ହଂସ ବାଜପେୟୀ ଶ୍ରୀ ମନ୍ଦିରର କାର୍ଯ୍ୟ ଶେଷ କରି ସାରି, କାରିଗରମାନଙ୍କ ଆଦର୍ଶ ମନ୍ଦିରଟିକୁ ଏହି ବାରବାଟିର ନବତଳ ପ୍ରାସାଦରେ ରଖାଇବାକୁ ଆଣିଥିଲେ । ତାହା ମନ୍ତ୍ରୀ ବିଷ୍ଣୁଦେବ ଜନ୍ତୁ ଏହିଠାରେ ସ୍ଥାନ ନିର୍ବାଚନ କରିଛନ୍ତି ।

**ଲକ୍ଷ୍ମଣ**—(ହାତ ଟେକି ପ୍ରଣାମ କଲେ) ଅପୂର୍ବ ଗଠନ ଏ କାରିଗରମାନଙ୍କ ଶ୍ରେଷ୍ଠ କଳ୍ପନା ନିକଟରେ ସ୍ୱତଃ ସ୍ୱତଃ ମସ୍ତକ ନତ ହୋଇପଡ଼େ । ଅହ ବିଷ୍ଣୁଦେବ ! ତାଙ୍କପରି ବିଚକ୍ଷଣ ବୀର ମନ୍ତ୍ରୀର ସାହଚର୍ଯ୍ୟ ପାଇଥିଲେ ଆଜି ମୋତେ ବଙ୍ଗର ସିଂହାସନ ଛାଡ଼ି ମହାରାଜାଙ୍କର ଶରଣାର୍ଥୀ ହେବାକୁ ପଡ଼ି ନ ଥାନ୍ତା ।

ଅନଙ୍ଗ—ମହାରାଜ ଲକ୍ଷ୍ମଣ ସେନ ! ଆପଣ ମୋର ବନ୍ଧୁ, ମାନ୍ୟାସ୍ପଦ ଅତିଥି ।
ଶରଣାର୍ଥୀ ବୋଲି କହି ମୋତେ ଅଯଥା ଲଜ୍ଜା ବା କଷ୍ଟ ଦେବେ ନାହିଁ ।

ଲକ୍ଷ୍ମଣ—ଉତ୍କଳ ସମ୍ରାଟ ମହାନୁଭବ ! ଶତ ମୁଖରେ ଆପଣଙ୍କ ପ୍ରଶଂସା ଅସମ୍ଭବ ।
ଏ ନବତଳ ପ୍ରାସାଦ ବାରବାଟୀ ଯେପରି ଆପଣଙ୍କ ଅକ୍ଷୟ କୀର୍ତ୍ତିର ନିଦର୍ଶନ,
ଶ୍ରୀମନ୍ଦିର ଚୂଡ଼ାର ଧ୍ୱଜାରେ ମଧ୍ୟ ସେହିପରି ମହାରାଜ ଅନଙ୍ଗଭୀମ ଦେବଙ୍କର
ଯଶ ଯୁଗ ଯୁଗାନ୍ତର ଘୋଷିତ ହେଉଥିବ । ଛଳ କୌଶଳ-ପଟୁ ପ୍ରବଳ
ମୁସଲମାନ ଶକ୍ତିର କି ସାଧ୍ୟ ଯେ ସେ ଉତ୍କଳର ସୀମା ସ୍ପର୍ଶ କରିବ ?

ଅନଙ୍ଗ—ଏ ପ୍ରଶଂସା ମୋର ନୁହେଁ ମହାରାଜ ! ପ୍ରଜାପୁଞ୍ଜର ରାଜଭକ୍ତି, ବିଷ୍ଣୁ
ଦେବଙ୍କର ଦକ୍ଷତା, ଆଉ ଯୁବରାଜଙ୍କର ଅଦ୍‌ଭୁତ ସାହସ ଓ ବୀରତ୍ୱ
ଏ ବିଜୟର ଭିତ୍ତି । ବାରବାର ପରାସ୍ତ ହୋଇ ମୁସଲମାନ ସେନା ଉତ୍କଳ
ଗ୍ରାସର ଲୋଭ ଏଡ଼ିପାରୁ ନାହାନ୍ତି । ଯୁବରାଜ ଏଥିଅର ହିଁ ଜେ ଯାଇଛନ୍ତି ।
ଜଗନ୍ନାଥଙ୍କର ଯାହା ଇଚ୍ଛା !

(ଇଶାନ ପଟ୍ଟନାୟକଙ୍କ ପ୍ରବେଶ ଓ ରାଜୋଚିତ ସମ୍ମାନ ପ୍ରଦର୍ଶନ)

ଅନଙ୍ଗ—କେତେବେଳେ ଆସିବା ହେଲେ ପଟ୍ଟନାୟକେ ?

ଇଶାନ—ଏଇକ୍ଷଣିତ ବାହୁଡ଼ିଲି ମହିମା ! ଗ୍ରାମୁ ଦର୍ଶନ କରୁଥାନ୍ତି, ବଯାକୁ
ବାହୁଡ଼ିବ ବୋଲି—

ଅନଙ୍ଗ—ବିଶ୍ରାମ ନ ନେଇ କାହିଁକି ତର ତର ହେଲ ? ଇଶାନ ପଟ୍ଟନାୟକଙ୍କ
କାର୍ଯ୍ୟ ତତ୍ପରତାରେ ମୋର ସନ୍ଦେହ ଥିବ ବୋଲି ମନେକଲ ?

ଇଶାନ—ନାହିଁ ମହିମା ! ଗ୍ରାମୁ ଦର୍ଶନ କରି—

ଅନଙ୍ଗ– ଦାମୋଦର ବଡ଼ପଣ୍ଡାଙ୍କ ସମ୍ବାଦ କଅଣ ?

ଇଶାନ– ରାଜସ୍ୱମନ୍ତ୍ରୀ ସନ୍ଧ୍ୟା ସାରି ଆସୁଛନ୍ତି । ନଳ ଭିଆଣ କାର୍ଯ୍ୟ ଶେଷ ହୋଇଛି ।
ଭୂମିମାପ ସାରି ଦେଖାଗଲା—ଦେବୋତ୍ତର, ବ୍ରହ୍ମୋତ୍ତର ଓ ମହଦାଣ
ମିନାକାଦ ବାକି ରାଜସ୍ୱ ସ୍ଥିର କୋଟି ଡେଯ୍ଯାଳିଶ ଲକ୍ଷ ହେବ ।

ଲକ୍ଷ୍ମଣ—ମହାରାଜ କଅଣ ରାଜ୍ୟର ଭୂମି ପରିମାଣ ସ୍ଥିର କରାଉଥିଲେ ?

ଅନଙ୍ଗ—ହଁ ମହାରାଜ ! ସମସ୍ତ ଭାର ଏଇ ଦୁଇଜଣଙ୍କର ଉପରେ ନ୍ୟସ୍ତ ଥିଲା ।
ତୁହେଁ ଧୂଳିକର । ଏଇ ବାରବାଟି ଦୁର୍ଗ ନିର୍ମାଣ ପୂର୍ବେ ଦିନେ ମୁଁ
ମହାନଦୀରେ ନୌକା ଭ୍ରମଣ ଉଦ୍ଦେଶ୍ୟରେ ବାହାରିଲି, ଦେଖିଲି ଏକ ଅଦ୍ଭୁତ
ଦୃଶ୍ୟ । ସେଦିନ ପଟ୍ଟନାୟକ ସାଙ୍ଗରେ ଥାଆନ୍ତି ।

ଈଶାନ—ଏଇ ଯେଉଁ ସ୍ଥାନରେ ଆଜ୍ଞ ପ୍ରାସାଦ ତୋଳା ହୋଇଛୁ ବୃଷେଶ୍ୱର ମହାଦେବଙ୍କ ନିକଟରେ, ଠିକ୍ ସେହିଠାରେ କୁଅଁାଣ ପର୍ଯ୍ୟନ୍ତ ଗୋଟିଏ ବଗପକ୍ଷୀ ମାଡ଼ି ବସିଥାଏ ।

ଲକ୍ଷ୍ମଣ—ଉତ୍କଳର ସବୁକଥା ଅଦ୍ଭୁତ ।

ଈଶାନ—ମହିମା ସେ ଦୃଶ୍ୟ ଦେଖି ଚୌଦ୍ୱାର ଛାଡ଼ି ଏହିଠାରେ ଦୁର୍ଗ ନିର୍ମାଣ କରିବାକୁ ଆଜ୍ଞା ଦେଲେ ।

(ଖୁଣ୍ଟିଆର ପ୍ରବେଶ ଓ ଅଭିବାଦନ)

ଖୁଣ୍ଟିଆ—କୁମାରଙ୍କ ଛାମୁରୁ ଯୁଦ୍ଧରୁ ବାହୁଡ଼ା ବିଜେ କରିଜନ୍ତି । ଭଗସ୍ୱ ଉଦନ୍ତ ନେଇ ଆସିଛୁ । ପଠାଣସେନା ବାଟ ଘାଟ ନମାନି ପଳେଇଛନ୍ତି । ନଗରରେ ବିଜୟ ଘୋଷଣା ହେଉ । ଆମ ସାଇଟକେ ମହାନଦୀ ପାରହେଉଛନ୍ତି ।

ଅନଙ୍ଗ—ଜୟ ଜଗନ୍ନାଥ ! ସୁସମ୍ବାଦ ।

ଲକ୍ଷ୍ମଣ—ଆଜ୍ଞା ହୁଅନ୍ତୁ ମହାରାଜ । ଯୁବରାଜଙ୍କୁ ଗଡ଼ଦ୍ୱାରକୁ ଅଭିବାଦନ କରିଆଣି ଆସିବି । ପଠାଣସୈନ୍ୟ ଛତ୍ରଭଙ୍ଗ ଦେଇ ପରାଜିତ । ଏ ଆନନ୍ଦ ସବୁଠାରୁ ମୁଁ ବେଶି ଅନୁଭବ କରୁଛି ମହାରାଜ !

ଅନଙ୍ଗ—ପଟ୍ଟନାୟକେ ! ଶ୍ରୀନଗରରେ ଉତ୍ସବ ପାଳିତ ହେଉ । ରାଜ୍ୟରେ ଘୋଷଣା ପ୍ରସ୍ତୁତ କର । ମୁଁ ମହାରାଜ ଲକ୍ଷ୍ମଣ ସେନଙ୍କ ସହିତ ନିଜେ ଯୁବରାଜଙ୍କୁ ଆଶୀର୍ବାଦ କରି ଆଣିବି । (ଆସନ ତ୍ୟାଗ)

(କାହାଳୀ ବାଜିଲା ଖୁଣ୍ଟିଆ—ଅଗ୍ରଗାମୀ ହେଲା)

●

## ଦ୍ୱିତୀୟ ଦୃଶ୍ୟ

(ମହାନଦୀରୁ ସ୍ନାନ ସାରି ବିଶ୍ୱନାଥ କବିରାଜେ ଆସୁଥିଲେ, ଗଙ୍ଗାସ୍ତବ ପାଠ କରି କରି—)

"ଦେବୀ ସୁରେଶ୍ୱରୀ ଭଗବତୀ ଗଙ୍ଗେ"

(ଗ୍ରାମୁ ଡଗର ଆସି ପ୍ରଣାମ କଲା—କବିରାଜ ହାତ ଉଠାଇ ଆଶୀର୍ବାଦ କଲେ

ବିଶ୍ୱନାଥ—କିଏ ଡଗର ?

ଡଗର—ମହିମା ସ୍ମରଣ କରୁଛନ୍ତି । ପରୀକ୍ଷା ଆଜ୍ଞାହେଲେ କି—ବିଶ୍ୱନାଥ କବିରାଜଙ୍କୁ ଗ୍ରାମୁ ଡଗର ଜଣାଅ ! ଘରଟି ବୁଝିଲି ଆପଣ ମହାନଦୀକି ଆସିଛନ୍ତି ?

ବିଶ୍ୱନାଥ—ମହାରାଜ କେଉଁଠି ବିଜେ ହୋଇଛନ୍ତି ?

ଡଗର—ବାରବାଟୀ ବେହରଣ ମେଲରେ । ବିଦ୍ୟାଧର ପଣ୍ଡିତେ ବସି, ତାଙ୍କ ଏକାବଳୀ ପଢ଼ି ଶୁଣାଉଥିଲେ । ମହାରାଜାଙ୍କ ବଙ୍ଗ ବିଜୟ କଥା ବର୍ଣ୍ଣନା କରି ବହୁତ ଲେଖିଛନ୍ତି ।

ବିଶ୍ୱନାଥ—ମୁଁ ମଧ୍ୟ ମୋର ସାହିତ୍ୟ ଦର୍ପଣରେ ଆମ ନରସିଂହ ଦେବ ମହାରାଜାଙ୍କ କୀର୍ତ୍ତି ଆଲୋଚନା କରିଛି ଯେ—

ଡଗର—କଅଣ ହେବ ଆଜ୍ଞା ? ଦୁଇ ପଣ୍ଡିତଯାକ ତ ସଂସ୍କୃତରେ ଲେଖିବା ହେଲ, ସାଧାରଣ ଲୋକ ବୁଝିବ କେଉଁଠୁ ?

ବିଶ୍ୱନାଥ—ବୁଝିଲ ନାଇଁକି ଡଗର ! ମୁଖ୍ୟଭାଷା ହେଲ ସଂସ୍କୃତ । ସାହିତ୍ୟ ବୋଲ, ଅଳଙ୍କାର ବୋଲ—ସମସ୍ତ ସଂସ୍କୃତ ଭାଷାର ଶିରା-ପ୍ରଶିରା ।

ଡଗର—ହଁ ମହାରାଜ ତ ସେହିଥିରେ ସ୍ନେହୀ । ରାଜାନୁଗତ ଧର୍ମ । ସବୁ ତ ସେହିପରି ହବ । ଆପଣ ନଅରକୁ ଯାଆନ୍ତୁ । ମୁଁ ପୁଣି ନରହରି ତୀର୍ଥଙ୍କ ପାଖକୁ ଯିବି । ପାଟମହାଦେଈଙ୍କୁ ସେ ଧର୍ମକଥା ଶୁଣାଇବେ, ଆଜି ସନ୍ଧ୍ୟାକୁ । ଆଗରୁ ସମ୍ବାଦ ଦେବାକୁ ଆଜ୍ଞା ହୋଇଛି ।

ବିଶ୍ୱନାଥ—ହେଉ, ତେବେ ପୋଥିଟା ନେଇଯାଉଥାଏ, ଚାଲ ।

(ପ୍ରସ୍ଥାନ କଲେ ପୋଥି ଧରି)



## ତୃତୀୟ ଦୃଶ୍ୟ

(ବାରବାଟିର ବୈଠକ ଘର । ଲାଙ୍ଗୁଳା ନରସିଂହ ଦେବ ଓ ସଭାସଦ୍‌ବର୍ଗ ଯଥାସ୍ଥିତ ଅବସ୍ଥାନ)

ନରସିଂହ—ବାରବର୍ଷ ପୂରିବାକୁ ଆଉ ଅଳ୍ପଦିନ ରହିଲା । ତଥାପି କୋଣାର୍କ ମନ୍ଦିର ଶେଷ ହେଲା ନାହିଁ ।

ଅମାତ୍ୟ—ମହିମା ! କୋଣାର୍କର ଅର୍କ ମନ୍ଦିର କାରୁକଳାରେ ପୃଥିବୀବିଖ୍ୟାତ ହେବ । ମନ୍ଦିର ମଧ୍ୟରେ ମୂର୍ତ୍ତି ଶୂନ୍ୟରେ ରହିବେ । ଏଭଳି କାର୍ଯ୍ୟ ସମ୍ପୂର୍ଣ୍ଣ ହେବା କଅଣ ସହଜସାଧ୍ୟ ? ଶିବେଇ ସାନ୍ତରାଙ୍କ ତତ୍ତ୍ୱାବଧାନରେ କାର୍ଯ୍ୟ

ବହୁଦୂର ଅଗ୍ରସର ହୋଇଗଲାଣି । ପ୍ରଭୁଙ୍କ ଆଦେଶରେ ମୁଁ ତ ନିଜେ ଯାଇ ସବୁ ଦେଖି ଆସିଛୁ ।

ନରସିଂହ—ସମ୍ବାଦ ପଠାଇ ଦିଅନ୍ତୁ । ଏହି ମାଘ ଶୁକ୍ଳ ସପ୍ତମୀ ଦିନ ମନ୍ଦିର ପ୍ରତିଷ୍ଠା ହେବ । ବନ୍ଦୀମାନେ ଉଦ୍ଧାର ହେବେ । ବାରଣ ବନ୍ଦୀଣୀ ଲାଗି କାର୍ଯ୍ୟ ଶେଷ ନୋହିବା ଦୁଃଖର ବିଷୟ ସିନା ।

ଅମାତ୍ୟ—ଆଜି ସମ୍ବାଦ ପଠାଇଦେବି । ଦେଉଳର ଚୂଳବନ୍ଧା ଆରମ୍ଭ ହୋଇଥିଲା, ଦେଖି ଆସିଛି ।

ନରସିଂହ—ପଶ୍ଚିମ ବଙ୍ଗଳାର ରାଜ୍ୟମାନ ପରିଦର୍ଶନ କରିବାକୁ କାଲି ମୁଁ ନିଜେ ବାହାରି ଯିବି । ଫେରିଆସି ମନ୍ଦିର ପ୍ରତିଷ୍ଠାର ଉପଯୋଗ କରାଯିବ । ପଠାଣ ଆକ୍ରମଣରେ ଆଉ କିଛି ସୂଚନା ପାଇଛନ୍ତି ?

ଅମାତ୍ୟ—ଅସମ୍ଭବ ! ମଣିମାଙ୍କର ବଙ୍ଗ ବିଜୟ ପରେ ସେମାନେ ଛିନ୍ନଭିନ୍ନ ହୋଇ ପଡ଼ିଛନ୍ତି । ତୁଫାନ୍ ଖାଁ ପରାସ୍ତ ହୋଇ ପଳାଇଯାଇଛି । କରମୁଦ୍ଦିନ ପରି ଯୋଦ୍ଧା ସେନାପତି ପ୍ରଭୁଙ୍କ ଖଡ଼୍ଗରେ ଶେଷ ହେବା ପରେ ଆଉ ପଠାଣ-ମାନଙ୍କର ଶକ୍ତି ନାହିଁ—ସହଜେ ଉଠିବେ ।

ନରସିଂହ—ତୁଫାନ ଖାଁ ଦିଲ୍ଲୀପାତିସାଙ୍କ ସାହାଯ୍ୟ ମାଗିବାକୁ ପଳାଇଛି । ସେ ବଙ୍ଗ ଆକ୍ରମଣରେ ଆଶା ଏକାବେଳକେ ଛାଡ଼ି ନାହିଁ । ତେଣୁ ଅଧିକୃତ ମେଦିନୀପୁର, ହାବୁଡ଼ା ଆଉ ହୁଗୁଳିରେ ଆମ୍ଭମାନଙ୍କ ପାଇକ ସେନାଗଣ ରଖିବା ଆବଶ୍ୟକ । ଏଣୁ ମୁଁ ନିଜେ ସେସବୁ ସୀମାନ୍ତ ପରିଦର୍ଶନ କରିବା ଉଚିତ ମଣୁଛି ।

ଅମାତ୍ୟ—ବିଜୟ ଶିଳାଲିପିମାନ ଖୋଳା ସରିଛି । ପ୍ରଭୁ ଗମନରେ ସେଗୁଡ଼ିକ ପଠାଗଲେ ଯଥାସ୍ଥାନରେ ସ୍ଥାପନ କରାଯାଇ ପାରନ୍ତା । ବିଶ୍ୱନାଥ କବିରାଜ ମଧ୍ୟ ଏହି ମତ ଦିଅନ୍ତି ।

ନରସିଂହ—ଭୁବନେଶ୍ୱର ମନ୍ଦିର-ଗାତ୍ରରେ ପ୍ରଥମେ ମହାବୀର ପରମର୍ଦ୍ଦୀ ଦେବଙ୍କ କୀର୍ତ୍ତିର ଲେଖମାନ ଥାଇ ଶିଳାଲିପି ସ୍ଥାପିତ କରାଅ । ପଠାଣମାନଙ୍କ ପରାଜୟ ମୂଳରେ ତ ତାଙ୍କର ବଳବୀର୍ଯ୍ୟ ଉତ୍କଳର ଗୌରବ ।

ଅମାତ୍ୟ—ଚନ୍ଦ୍ରିକା ଦେବୀ ତୋଳାଇଥିବା ବିଷ୍ଣୁ ମନ୍ଦିର ଗାତ୍ରରେ ତାଙ୍କ ସ୍ୱାମୀ ସ୍ୱର୍ଗୀୟ କରମର୍ଦ୍ଦୀ ଦେବଙ୍କ କୀର୍ତ୍ତିଲିପି ଅବସ୍ଥାପିତ ହେଲେ ସୁନ୍ଦର ହୁଅନ୍ତା ବୋଲି ମୋର ବିଶ୍ବାସକୁ ଆସୁଛି ମଣିମା !

ନରସିଂହ—ଉତ୍ତମ ପ୍ରସ୍ତାବ ।

(ଖୁର୍ଣ୍ଣି ଆର ପ୍ରବେଶ ଓ ଅଭିବାଦନ)

ଘୁଣ୍ଟିଆ—ପଣ୍ଡିତ ନରହରି ତୀର୍ଥେ ଚଣ୍ଡୀମନ୍ଦିରରେ ପ୍ରଭୁଙ୍କ ଅପେକ୍ଷାରେ ଅଛନ୍ତି । ଆଜ୍ଞା ହେଲେ ପ୍ରଭୁଙ୍କୁ ଆସିବେ ।

ନରସିଂହ—ନା ନା, ଦର୍ଶନକୁ ଯିବି । ସେହିଠାରେ ତାଙ୍କ ରଚନା ଶୁଣିବି । ଆପଣ ମଧ୍ୟ ଆସନ୍ତୁ ମହାମନ୍ତ୍ରୀ ! ତୀର୍ଥଙ୍କର ରଚନା ଶୁଣିବେ । ଶାସନର ଘଟଣାବଳୀ ସେ ଅମର କରିଯାଇଛନ୍ତି ।

ଅମାତ୍ୟ—ଆଜ୍ଞା ମହିମା ! ସେ ତ ଉଚ୍ଚକୋଟିର ପଣ୍ଡିତ । ବିଶ୍ୱନାଥ କବିଙ୍କପରି ତାଙ୍କ ରଚନା ଉତ୍କୃଷ୍ଟ ।

(ଆରତି ଘଣ୍ଟି ବାଜିଲା)

ନରସିଂହ—ଦେବୀଙ୍କ ଆରତି ଆରମ୍ଭ ହେଲା—ଚାଲ ।



## ଚତୁର୍ଥ ଦୃଶ୍ୟ

(ଅଦୂରରେ ହୁଳହୁଳି ଶୁଭୁଛି—ଶଙ୍ଖ ବାଜୁଛି । ଗ୍ରାମ୍ୟ ରମଣୀମାନେ ପ୍ରଦୀପ ଘେନି ଆସିଛନ୍ତି । ସମସ୍ତଙ୍କ ମୁଖରେ ହର୍ଷରେଖା । ନେପଥ୍ୟ-ଦିଗରୁ ଶୁଭିଲା ଜୟଧ୍ୱନି)

ନେପଥ୍ୟରୁ— "ଜୟ ଜଗନ୍ନାଥ ଦେବଙ୍କର-ଜୟ"
ଜୟ ପୁରୁଷୋତ୍ତମ ଦେବ ମହାରାଜା ଙ୍କ ଜୟ"

୧ମ—ହଇଲେ, ମୁଁ କହୁଚ ପରି ମଠ କର ନାହିଁ । ଉତ୍ତର କବାଟ ଆସି ଆମ ଘରେ ଖବର ଦେଇଗଲେ ।

୨ୟ—କିଏ ଜାଣିଥିଲା ମହାରାଜ ଏଡ଼େବେଗେ ଯୁଦ୍ଧରୁ ବାହୁଡ଼ା ବିଜେ କରିବେ ବୋଲି ।

୧ମ—ରଥ ଯାଏ. ବାହୁଡ଼ା ଦଶମୀ ଯାଏ, ମହିମା ତ ଆହୁରି କେତେଦିନ ଯୁଦ୍ଧସ୍ଥଳରେ ରହଣି କରନ୍ତେ ଲେ ! ଏଥର ଏବେ ଏଡ଼େ ବେଗେ ବାରବାଟୀ କଟକକୁ ବାହୁଡ଼ା ବିଜେ ହେବେ ବୋଲି କିଏ ଜାଣିଥିଲା ?

୨ୟ—ଆଲୋ, ଜାଣିଚୁଟି—ଏଥର ମହାରାଜା ଏକୁଟିଆ ବିଜେ ହୋଇ ନାହାନ୍ତି ଲୋ ! ସଙ୍ଗତରେ ପରି ମହାରାଣୀ ।

୧ମ—ମହାରାଣୀ ? (ହସି) ମଲ୍ଲ ଲୋ ଗରବ ! ମହାରାଜାଙ୍କୁ ଚେଇଁକ ଟିକଲ କରିବାକୁ ଥିଲା ତାଙ୍କ ?

୨ସ୍ତ୍ରୀ—ଟିକଲ କଣ ଲୋ ? କାଞ୍ଚିଯୁଦ୍ଧ ଜିଣିକରି ଜେମାକୁ ଆଣିଥିଲେ । ମଙ୍ଗଳକୃତ୍ୟ ହେଲାପରା ରଥ ଦିନ ?

(ନେପଥ୍ୟରୁ ପରେ ପରେ ତୋପ ଶୁଭିଲା, ତାହାଁ ସହିତ ଜୟଧ୍ୱନି)

୩ସ୍ତ୍ରୀ—କାଠଘୋଡ଼ୀ ପାରି ହେଲେଣି ଲୋ ମହାରାଜା ।

୨ସ୍ତ୍ରୀ—ଆହୁରି ପାଖ ହେଲେଣି ମ । ତୋପ କେଡ଼େ ପାଖରେ ଶୁଭୁ ନାହିଁ ?

(କାହାଳୀ ଶୁଭିଲା । ଜୟଧ୍ୱନି ମଧ୍ୟରେ ପାଇକମାନେ ନାଚ ନାଚ ଗଲେ । ନାରୀମାନେ ହୁଳହୁଳି ପକାଇ ବନ୍ଦାପନା କଲେ)

୧ମ—ଦେଖ୍ ଦେଖ୍ ନରସିଂହଙ୍କୁ ଦେଖିଲଣି ରଜନୀ ଦୋଉ ! ବାହାରେ ବାହୁଟି, ମୁଣ୍ଡରେ ବରସାମଲ, ହାତରେ ସୁନାକଙ୍କଣ । ଡାକ ମ, ତା'ଠୁ ସବୁ ବାତେନ ମିଳିବ ।

୨ସ୍ତ୍ରୀ— ମଲ୍ଲ, ସେ ଗହଳରେ ଯାଉଚଟିକ ?

୧ମ—ଆମରି ପୁଅ ତ ! ଗହଳରେ ଗଲେ କଣ ହେଲା ସେଇଠୁ ? ଏ ନରସିଂହ ! ଏ ପୁଅ ! (ନରସିଂହ ଆସି ଓଲଗି ହେଲା)

ମୁଁ ଗ ରାଇଜ କର ଲୋ ବାପା ! ତୁ ଏ ବାହୁଟି କଙ୍କଣ କୋଉଦିନ ପାଇଲୁ କରେ ?

ନରସିଂହ—ସବୁ ତମରମାନଙ୍କ କଲ୍ୟାଣ ଲୋ ମାଉସୀ ! ଗଲାଥର ଦକ୍ଷିଣ ଯୁଦ୍ଧରେ କପିଳେନ୍ଦ୍ର ଦେବ ଆଜ୍ଞା କରିଥିଲେ—ବାହୁଟି ତା ସାଙ୍ଗକୁ ବାହୁବଳେନ୍ଦ୍ର ପଦ । ଆମ କର୍ମକୁ ତ କୃଷ୍ଣା ନଈକୂଳେ ମହାରାଜାଙ୍କର ଅନ୍ତ ହୋଇଗଲା । ଏଥର କାଞ୍ଚି ଯୁଦ୍ଧରେ ଗୋପୀନାଥ ମୂର୍ତ୍ତିଙ୍କି ମୁଁ ଆଣି ଆସିଲି । ମହାରାଜା ଏ ସୁନା କଙ୍କଣ ପଟକ ଆଜ୍ଞା କରିଛନ୍ତି । ମୁଁ ଯାଉଛି ମାଉସୀ ! ମଣିମା ନଅରକୁ ବିଜେ ହେବେ । ପଛେ ପଛେ ତ ଆସୁଛନ୍ତି—ନଈପାରି ହେଲେଣି ।

୨ସ୍ତ୍ରୀ—ଆରେ ପୁଅ ! ଗୋଟିଏ କଥା କହିଦେଇ ଯା । କାଞ୍ଚି ଜେମା—

ନରସିଂହ—ଆଃ, ବକ୍ସୀଙ୍କି ଧନ୍ୟ କହିବା । ମହାରାଜା ତ ରୋଷହୋଇ ଆଜ୍ଞା କରିଥିଲେ – ଚଣ୍ଡାଳକୁ ବାହାଦିଅବୋଲି । ମଣିମା ଛେରା-ପହଁରା କରୁଛନ୍ତି, ବକ୍ସୀ ତ ଆଣି ଜେମାଦେଈଙ୍କି ସମର୍ପି ଦେଇଗଲେ । ମହାରାଜା ତ କାବା । ହରିବୋଲ, ହୁଳହୁଳିରେ ପୁରସ୍ତମ ଉଛୁଳିପଡ଼ିଲା ।

୧ମ—ସେଇ କଥା ପରା, ବନା ରଥ ଦେଖି ଆସିଲା ସେ—କହୁଥିଲା ଘରେ। ଶୁଣିଲୁ ଲୋ ! ସେ କଥା ସତ କି ମିଛ ?

ନରସିଂହ—ଏବେ ବାରବାଟୀ ନଅରରେ ପରା ସବୁ ଆୟୋଜନ ହେବ ! ମାଉସୀ ଲୋ ! ମୁଁ ଆସୁଚି । ତୁମେ ସବୁ ଆସୁନ ଗଡ଼ ଦୁଆରକୁ । ଏଠି କଅଣ ଦେଖିବ ? ମହାରଜା ସେଇବାଟେ ବିଜେ ହେବେ ।

୨ୟ—ସତେ ଏବେ । ଆସ ମ ଯିବା । (ପୁଣି ଜୟଧ୍ୱନି ଶୁଭିଲା)

୧ମ—ଏ ପୁଅ, ଆମକୁ ଟିକିଏ ଭଲ ଥାନ ଦେଖି ଠିଆ କରେଇଦେବୁ । ତୋ ସାଙ୍ଗରେ ଗଲେ ସୁବିଧା ତ ହେବ ।

ନରସିଂହ—ଆସ, ଆସବାର । (କହୁ ଆଗରେ ଚାଲିଗଲା)



## ପଞ୍ଚମ ଦୃଶ୍ୟ

(ବାରବାଟୀ ଦୁର୍ଗାଭ୍ୟନ୍ତର—ରଙ୍ଗମହଲ । ସମାସୀନ୍ ମହାରାଜ ପୁରୁଷୋତ୍ତମ ଦେବ । ପାର୍ଶ୍ୱରେ ଦଣ୍ଡାୟମାନ ବକ୍ସି ବାହାଦୁର । ଗୁଡ଼ିଏ ପୋଥି ରଖା-ହୋଇଛି ଘର ଭିତରେ ଓ କେତେଗୁଡ଼ିଏ ବ୍ୟାସାସନ ଉପରେ ମଧ୍ୟ ଥୁଆ-ହୋଇଛି । ପଣ୍ଡିତ ଶେଷ ଦେବ ପୋଥିଗୁଡ଼ିକ ଦେଖୁଥିଲେ । ପୁରୁଷୋତ୍ତମ ଦେବ ଟଙ୍ଗା ହୋଇଥିବା ଗୋଟିଏ ମାନଚିତ୍ର ଉପରେ ଦୃଷ୍ଟି ନିକ୍ଷେପ କରିଛନ୍ତି । ବକ୍ସି ତାଙ୍କୁ ସୀମା-ପ୍ରଦର୍ଶନ କରଉଥିଲେ)

ପୁରୁଷୋତ୍ତମ—ରାଜ୍ୟର ପରିସର ତେବେ ହୁଗୁଲୀ ନଦୀ ଉତ୍ତରରେ । ଦକ୍ଷିଣରେ କାବେରୀ । ଏଇ ପ୍ରାନ୍ତିନ୍ତ ରକ୍ଷାର ଭାର ବାସ୍ତବରେ ଆପଣଙ୍କ ଉପରେ ସିନା ବକ୍ସି ବାହାଦୁର ?

ବକ୍ସି—କ୍ଷମା କରିବେ ପ୍ରଭୁ ! ଉତ୍କଳ ସାମ୍ରାଜ୍ୟର ସୀମା ସଂରକ୍ଷଣରେ ଭାର ପ୍ରଭୁଙ୍କ ଆଦେଶ ଉପରେ ନିର୍ଭର କରେ । ବକ୍ସି, ଆଦେଶ ପାଳକ ମାତ୍ର ।

ଶେଷ ନମ୍ରତା ଗୁଣିନୋ ଜନାଃ ।

ପୁରୁ—କିଏ, ଶେଷ ଦେବ ! ଆପଣ ନୀରବରେ କଅଣ କରୁଥିଲେ ?

ଶେଷ—ମୁଁ ତ ନୀରବ ନ ଥିଲି । ମଣିମାଙ୍କ ସହିତ ସଦାଳାପ କରୁଥିଲି ।

ପୁରୁ—ମୋ ସହିତ ? ଏପରି କଥା !

ଶେଷ—(ପୋଥିଗୁଡ଼ିକୁ ଠାରି) ମୁକ୍ତି ଚିନ୍ତାମଣି, ଦୁର୍ଗୋତ୍ସବ, ଅଭିନବ ବେଣୀ-ସଂହାର—ଏଇମାନଙ୍କ ସଙ୍ଗେ କାବ୍ୟାଳାପ କରୁଥିଲି । ତା ଛଡ଼ା ନିକାଣ୍ଡ କୋଷ ଅଭିଧାନରେ ଶ୍ରୀମୁଖଙ୍କର ଦୁର୍ଗାସ୍ତୁତି ଦେଖୁଥିଲି । ଜଗନ୍ନାଥଙ୍କ ଚରଣରେ ଯେପରି ଅଚଳ ଭକ୍ତି, ତାହା ତ ନିଜେ ପ୍ରଭୁ ନିକଟରେ ଦେଖାଇ ଦେଇଛନ୍ତି, କାଞ୍ଚି ମୁଦ୍ଧରେ । ମାଆଙ୍କ ଚରଣରେ ମଧ୍ୟ ମଣିମାଙ୍କର ସେହିପରି ନିଷ୍ଠା ।

ପୁରୁ—ନିଷ୍ଠାର ସମସ୍ତ କାହିଁ ପଣ୍ଡିତ ମହାଶୟ ? ଆପଣମାନଙ୍କ ପରି ବିଦ୍ୱାନମାନଙ୍କ ସାହଚର୍ଯ୍ୟରେ ମଳୟ ପରଶରେ ନିମ୍ବର ଚନ୍ଦନତ୍ୱ ଲାଭ ମୋର ।

ଶେଷ—ଏଇ ବିନୟ ସ୍ୱଭାବ ପୁରୁଷୋତ୍ତମ ଦେବ ମହାରାଜାଙ୍କୁ ଅଜର ଅମର କରି ରଖିବ ସିନା ! ଯୋଗ୍ୟ-ଯୋଗ୍ୟେନଂ ନୀତିରେ ତ୍ରିଗୁଣ ବକ୍ସି ଆପଣେ ଉପଯୁକ୍ତ କନ୍ୟାରତ୍ନ ମିଳିଛନ୍ତି । ତାଙ୍କର ବିଚକ୍ଷଣ ବୁଦ୍ଧି ଯେଣୁ ଆଜି ବାରବାଟୀ ନଅରରେ ମଙ୍ଗଳକୃତ୍ୟ ଉତ୍ସବ ।

ବକ୍ସି—କବି ବଳରାମ ଦାସ ମଧ୍ୟ ମହାରାଜାଙ୍କ କାଞ୍ଚିବିଜୟ ଗାଥା ତାଙ୍କର କ୍ଷେତ୍ର-ପରିକ୍ରମାରେ ଉଲ୍ଲେଖ କରିଛନ୍ତି—ମୋତେ ଦେଖାଉଥିଲେ । ମରଣ ଲାଗି ମନୁଷ୍ୟର ଜନ୍ମ । ସ୍ଥାୟୀ ମାତ୍ର ଯଶ-କୀର୍ତ୍ତି । କବିଙ୍କର ଲେଖନୀ ଯୁଗ ଯୁଗ ବ୍ୟାପୀ ଅମର ରହିବ । ମହାରାଜାଙ୍କ ଅକ୍ଷୟ କୀର୍ତ୍ତି ଓଡ଼ିଆ ଜାତିର ଦୈ ଗୀତିକା ହୋଇଥିବ ମଣିମା ।

(ଜଣେ ଦୂତ ଖଣ୍ଡିଏ ଲେଖା ଯେନି ସମ୍ମାନସହ ବଢ଼ାଇ ଦେଲା)

ବକ୍ସି—(ଲେଖା ମହାରାଜଙ୍କୁ ଦେଲେ)

ପୁରୁ—(ଫିଟାଇ ପଢ଼ି) ଦେଖନ୍ତୁ ! ମନେ କରିଥିଲି—କାଞ୍ଚି ରାଜା ଶାଳ୍ୱନରସିଂହଙ୍କ ପରାଜୟ ପରେ ରାଜ୍ୟର ଆଭ୍ୟନ୍ତରୀଣ ଶୃଙ୍ଖଳାପ୍ରତି ଟିକିଏ ଦୃଷ୍ଟି ଦେବି । କିନ୍ତୁ ବିଧାତାର ନିର୍ଦ୍ଦେଶ ଅନ୍ୟ ପ୍ରକାର ।

ଶେଷ—କ'ଣ ମଣିମା ! ପୁଣି ଯୁଦ୍ଧ ?

ପୁରୁ—ମୁଁ ଯୁଦ୍ଧର ପକ୍ଷପାତୀ ନୁହେଁ, ମୋତେ ଯୁଦ୍ଧ ଟାଣି ନେଉଛି ଶେଷ ଦେବ ! ଦାକ୍ଷିଣାତ୍ୟ ଅଞ୍ଚଳର ଶାସକ ଦକ୍ଷିଣ କପିଳେଶ୍ୱରଙ୍କ କାଳ ପରେ ପୁଣି ମାଲିକ ବାହାମନୀ ସୁଲତାନର ରାଜ୍ୟଲିପ୍ସା ବେଢ଼ିଉଠିଛି । ବିଶ୍ୱାସଘାତକ, ଧର୍ମତ୍ୟାଗୀ ନିଜାମ-ଉଲ୍‌ମୁଲ୍‌କ୍ ଏ ଦକ୍ଷିଣବିଜୟର ଖବର ନେଇଥିବାର ସମ୍ବାଦ ପାଇଲି । (ଉଠି) ଶାସ୍ତ୍ରଚର୍ଚ୍ଚାର ଅବସର କାହିଁ ପଣ୍ଡିତ ମହାଶୟ !

ଶେଷ—ପ୍ରଥମେ ରାଜ୍ୟରକ୍ଷାର ବ୍ୟବସ୍ଥା କରଣୀୟ ମହିମା !

ବଳ୍‌ସି—ମହିମା ! ମନ୍ତ୍ରଣା କକ୍ଷକୁ ବଢନ୍ତୁ ହୁଅନ୍ତୁ । ମୁଁ ସଙ୍ଗେ ସଙ୍ଗେ ନାୟକମାନଙ୍କୁ ସମ୍ବାଦ ଦେଉଛି । (ଚାଲିଗଲେ)

ପୁ ରୁ—ବାହ୍ୟମନା ରାଜ୍ୟରେ ଟିକିଏ ଅନ୍ତର୍ବିବାଦର ସୂଚନା ମିଳୁଛି । ତଥାପି କର୍ତ୍ତବ୍ୟରେ ଅବହେଳା ତ ଉଚିତ ନୁହେଁ ।

ଶେଷ—ରାଜନୀତି, ରାଜଧର୍ମ—କର୍ତ୍ତବ୍ୟର ମହତ୍ତ୍ୱ ପ୍ରକାଶ ମହିମା ! (ଘନ ଘନ ଘଣ୍ଟା ଓ ନାଗରା ଧ୍ୱନି) ବଜେ ହୁଅନ୍ତୁ । ବଳ୍‌ସି ସଂକେତ ଦେଲେଣି ।

—ପଟକ୍ଷେପ—



## ଷଷ୍ଠ ଦୃଶ୍ୟ

(ବାରବାଟୀର ଅଳନ୍ଦ, ଉପବିଷ୍ଟ କଷାୟବସନ-ପରିହିତ ପ୍ରତାପରୁଦ୍ର । ରାୟ ରାମାନନ୍ଦ ଓ କେତେଜଣ ପାରିଷଦ । ସାଧାରଣ ଆସନ ସଜ୍ଜିତ । ଦୂରରୁ ଶୁଣାଯାଉଛି ଖୋଳ କରତାଳର ଶବ୍ଦ । )

ପ୍ରତାପ—ରାୟ ରାମାନନ୍ଦ ! ରାଜତ୍ୱର ଆରମ୍ଭରୁ ଯୁଦ୍ଧ ବିଗ୍ରହ ମୋର ସହଚର ହୋଇ ପଡ଼ିଛି । କେତେବେଳେ ହେଲେ ଜୀବନରେ ଶାନ୍ତି ନାହିଁ, ସୁଖ ନାହିଁ । ଦୁର୍ଲଭ ମାନବଜନ୍ମର ଏଇ ଦ୍ୱନ୍ଦ୍ୱ ହିଁ କଅଣ ଚରମ ସାଧନ ?

ରାମାନନ୍ଦ—ମହାରାଜ ! ଜନ୍ମ ସହିତ ମରଣର ଅଚ୍ଛେଦ୍ୟ ସମ୍ବନ୍ଧ । ମରଣ ଲାଗି ହିଁ ମନୁଷ୍ୟର ଜନ୍ମ ବୋଲି କହିବାକୁ ହେବ । ସାମ୍ରାଜ୍ୟ ଲୋଭ ବା ଯୁଦ୍ଧଜୟ କରି ଯଦି ମୁକ୍ତି ବା ଅମରତ୍ୱ ମିଳୁଥାଆନ୍ତା—ତେବେ ବୁଦ୍ଧଦେବ କପିଳବାସ୍ତୁ ପରିତ୍ୟାଗ କରି ନ ଥାଆନ୍ତେ କି ଆଜି ଜଗତ ତାଙ୍କର ଦେବତ୍ୱ ସ୍ୱୀକାର କରନ୍ତା ନାହିଁ ।

ପ୍ରତାପ—କୃଷ୍ଣଦେବ ରାୟ ଗତ ଯୁଦ୍ଧରେ ଯୁଦ୍ଧ ଜୟ ବାସନାରେ କୂଟନୀତି ପ୍ରୟୋଗ କରି ମୋର ସେନାଧ୍ୟକ୍ଷମାନଙ୍କୁ ଅବିଶ୍ୱାସୀ ପ୍ରମାଣିତ କରି ବସିଲେ । ପରେ ତାଙ୍କର ଏ କୁରୁଚି ପ୍ରକାଶ ପାଇଲା ତ ! ମନୁଷ୍ୟର ମନୁଷ୍ୟତା କଅଣ ଏଇ ନୀତି ଭିତରେ ଫୁଟିଉଠେ ?

ରାମାନନ୍ଦ—ମହାରାଜଙ୍କ ପନ୍ଥା ତ ସଚରାଚର ମାନବର ଆଚରଣୀୟ ନୁହେଁ; ବିଶେଷତଃ ଯେ ମହାତ୍ମାଙ୍କ ଉପଦେଶ ଘେନି ସ୍ୱୟଂ ରାଜରାଜେଶ୍ୱର ହୋଇ, ଆଜି ସାମାନ୍ୟ କଷାୟ ବାସ ପିନ୍ଧି ବନ ନେଉଛନ୍ତି, ତାଙ୍କର ନିର୍ଦ୍ଦେଶ ହିଁ ଜଗତର ଶାନ୍ତି ପଥ ।

କବଡ଼ିଶ୍ରିମ—ଯୋଗ ହିଁ ମୂଳ । ସାଧନା ମନୁଷ୍ୟଙ୍କୁ ଏକମାତ୍ର ଶାନ୍ତି ଦେଇପାରେ । ମହାରାଜାଙ୍କ କୃପାରୁ ମୁଁ ଯେଉଁ ଯୋଗ ଚିନ୍ତାମଣି ଲେଖିଛି, ତହିଁରେ ଯୋଗ ସାଧନର ସରଳ ପନ୍ଥାମାନ ଲିପିବଦ୍ଧ କରିଛି । ମହାରାଜ ତ ଜାଣନ୍ତି । ସୁପଣ୍ଡିତ ଯୁଦ୍ଧ ବିଗ୍ରହ ବାସ୍ତବରେ ମନୁଷ୍ୟ ଜୀବନର ଲକ୍ଷ୍ୟ ନୁହେଁ ।

ପ୍ରତାପ—ବଙ୍ଗ ଆକ୍ରମଣ ସମ୍ବନ୍ଧେ ମୁଁ ମହାପ୍ରଭୁଙ୍କ ପରାମର୍ଶ ଲୋଡ଼ିଥିଲି । ସେ ମଧ୍ୟ ମତେ ଏହି ଉପଦେଶ ଦେଲେ ।

(ଦୂତର ପ୍ରବେଶ ଓ ଅଭିବାଦନ)

ଦୂତ—ନଦୀ ଆରପାରିରେ ମହାପ୍ରଭୁ ବିଜେ ହେବାର ଦେଖାଗଲାଣି ।

ରାମାନନ୍ଦ—ବାଲିରେ ତ ଚାଲିଚାଲି ଆସୁଛନ୍ତି । ସାଙ୍ଗରେ ଅଦ୍ୱୈତ ଦାଶେ ଓ ଅନ୍ୟ ଭକ୍ତମାନେ ଅଛନ୍ତି ବୋଧହୁଏ । ଆଦେଶ ହେଲେ ମୁଁ ଯାଇ ମହାପ୍ରଭୁଙ୍କୁ ପାଛୋଟି ଆଣନ୍ତି ମହିମା ।

ପ୍ରତାପ—ଏକା ଆପଣ କାହିଁକି ? ନଦୀକୂଳକୁ ଚାଲ ସମସ୍ତେ ଯିବା । ଶ୍ରୀ ଚୈତନ୍ୟଙ୍କର ଏ ଯାତ୍ରା ଆଜି କାର୍ତ୍ତିକ ପୂର୍ଣ୍ଣିମାରେ ବାଲିଯାତ୍ରା ନାମରେ ପ୍ରସିଦ୍ଧି ଲାଭ କରୁ । ପୁରରେ ସମ୍ବାଦ ଦିଅ । ସମାରୋହରେ ମହାପ୍ରଭୁଙ୍କର ଏ ଯାତ୍ରା ଉତ୍ସବ ପାଳିତ ହେଉ ।

(ନିକଟରେ କୀର୍ତ୍ତନ ଶୁଭିଲା)

ରାମାନନ୍ଦ—ନିକଟରେ କୀର୍ତ୍ତନ ଶୁଭୁଛି । ବୋଧହୁଏ ନଗରର ଅନ୍ୟାନ୍ୟ ଭକ୍ତମାନେ ମହାପ୍ରଭୁଙ୍କୁ ପାଛୋଟି ଆଣିବାକୁ ବାହାରିଗଲେଣି ।

ପ୍ରତାପ—ଚାଲନ୍ତୁ ! ଆମ୍ଭେମାନେ ମଧ୍ୟ ନଦୀକୂଳକୁ ଯିବା । ମହାପ୍ରଭୁଙ୍କର ଆସ୍ଥାନର ସମସ୍ତ ବନ୍ଦୋବସ୍ତ କରିସାରିଛନ୍ତି ତ ?

ରାମାନନ୍ଦ—ଉତ୍ତମ ପ୍ରସ୍ତାବ । ତଗର ! ତୁମେ ଯାଅ । ଗଡ଼ଦ୍ୱାରରେ ସମସ୍ତଙ୍କୁ ସମ୍ବାଦ ଦିଅ—ମହାରାଜାଙ୍କୁ ଅପେକ୍ଷା କରିବାକୁ ହେବ ।

ପ୍ରତାପ—ଆପଣମାନେ ଆସନ୍ତୁ ତେବେ—(ଉଠିଲେ)



## ସପ୍ତମ ଦୃଶ୍ୟ

(ଶ୍ରୀ ଚୈତନ୍ୟ ଓ ସଙ୍ଗୀମାନେ କୀର୍ତ୍ତନ ଗାଇ ଗାଇ ନଦୀତୀରରୁ ଆସୁଛନ୍ତି)

(ଗୀତ)

କୁଞ୍ଜେ ବିଜୟୀ ଗୋକୁଳଚନ୍ଦ୍ର
ନନ୍ଦ-ନନ୍ଦନ ଶ୍ୟାମ
ଫୁଲ୍ଲ ଆନନେ, ଶତ ଶଶଧର
ପରଶେ ମଧୁର ଠାମ ।୦।

ବନ ଲତିକା ବ୍ରଜ
ପଥେ ପଥେ ଚୁଏ ସୁମନ ରଜ
ମନ୍ଦ ମୁରଲୀ, ସମୀରେ ପହିଁଶ
ହରେ ସତୀ ମାନଲାଜ । ୧ ।

ବରଜ ଗୋପୀକା-ଘର କରି ପର
ଚଳଇ ତେଜି ସରମ ।
ଅଭିସାରେ ବିଜେ ରାଇ ରାଧିକା
ଗୁନ୍ଥି କୁସୁମ-ଦାମ । ୨ ।

(ଗାଇ ଗାଇ ଚାଲିଗଲେ)



## ଅଷ୍ଟମ ଦୃଶ୍ୟ

(ବାରବାଟୀ ଦୁର୍ଗର ଆଭ୍ୟନ୍ତର । ଦରବାର ପ୍ରକୋଷ୍ଠ ସମ୍ମୁଖରେ ଓଡ଼ିଶାର ରାଜସିଂହାସନ । ଦଣ୍ଡାୟମାନ—ସେନାପତି କଳାପାହାଡ଼ । ଅଦୂରରେ "ଆଲ୍ଲା ହୋ ଆକବର ଶବ୍ଦ" )

କଳାପାହାଡ଼—(ଅଙ୍ଗୁଳି ନିର୍ଦ୍ଦେଶ କରି) ଏହି ସେହି ସିଂହାସନ । ଏହି ସିଂହାସନ ତଳେ ଦିନେ ରାଜା ମୁକୁନ୍ଦ ଦେବଙ୍କୁ ମୁଁ ଜାନୁପାତି ଭିକ୍ଷା ମାଗିଥିଲି । ହିନ୍ଦୁଧର୍ମ ପୁନର୍ଗ୍ରହଣ ଲାଗି ସୁଯୋଗ ଦେବାକୁ ଯେତେ ପ୍ରାର୍ଥନା କରିଛି । ହିନ୍ଦୁ ! ଜଗତରେ ଶ୍ରେଷ୍ଠ ଧର୍ମ ତୋର । ଦେବତା ତୋର ଜଗନ୍ନାଥ । ବିରାଟ ମନ୍ଦିର । ଜଗତର ନାଥ ବୋଲାଇ ଉପେକ୍ଷା କରିଛୁ ମୋତେ ଆଜି ! ଆଜି ସେଇ ସିଂହାସନ, ଆଉ ସମ୍ମୁଖରେ ସେଇ କଳାପାହାଡ଼ । ଅଭିମାନୀ ମୁକୁନ୍ଦଦେବର ଶବ ଆଜି ଶୃଗାଳ କୁକୁରଙ୍କ ଖାଦ୍ୟ । ଭିଖାରି କଳାପାହାଡ଼ ବିଜେତା—ସେଇ ସିଂହାସନ ଅଧିକାରୀ, ଓଡ଼ିଶାର ଶାସକ । ମୁଁ ବିଧର୍ମୀ, ମୁଁ ଲୁଣ୍ଠନକାରୀ, ମୁଁ ଦସ୍ୟୁ, ମୁଁ ଉତ୍ପୀଡ଼କ । (ହାସ୍ୟ) ହିନ୍ଦୁର ସତ୍ତା

ଲୋପରେ ମୋର ପ୍ରତିହିଂସାର ତୃପ୍ତି । ଏଇ ଦେଖ ଜଗନ୍ନାଥ ! ଯଦି ତୁମେ ହିନ୍ଦୁର ଦେବତା—ଗୃହି ଦେଖ, ହିନ୍ଦୁର ପବିତ୍ର ସିଂହାସନ ଉପରେ ସେହିନର ସେହି କୃପାଭିକ୍ଷୁ କଳାପାହାଡ଼ର ଉପବିଷ୍ଟ ଶକ୍ତି ଥିଲେ ରକ୍ଷାକର ।

(ସିଂହାସନରେ ବସିବାକୁ ଯାଉଥିଲେ—ସହସା ତୂର୍ଯ୍ୟନାଦ ଶୁଣି ଫେରିଲେ ସେ । ଜଣେ ମୁସଲମାନ ସେନାନାୟକର ପ୍ରବେଶ ଓ ଅଭିବାଦନ)

ସେନାନାୟକ—ଓଡ଼ିଶାର ରାଣୀ ବନ୍ଦୀନୀ । ସେନାପତି କ ଆଦେଶ ଦେଉଛନ୍ତି ?

କଳାପାହାଡ଼—(ଉଲ୍ଲାସ ହାସ୍ୟ) ଆଦେଶ ନୁହେଁ, ଏ ଯବନ-ସେନାପତି କଳାପାହାଡ଼ର ଆଦେଶ । ସୁବର୍ଣ୍ଣ ଥାଳିରେ ଉତ୍କଳ ରାଜ-ଗନ୍ତାଘରର ସର୍ବଶ୍ରେଷ୍ଠ ମଣି-ମୁକ୍ତା-ହୀରା ଉପହାର ଦେଇ ଓଡ଼ିଶାର ରାଣୀ ଏଇ ସିଂହାସନର ବର୍ତ୍ତମାନ ଅଧିକାରୀର ବନ୍ଦନା କରନ୍ତୁ ।

ସେନାନାୟକ—ଯୋ ହୁକୁମ । (ସଲାମ କରି ଚାଲିଗଲେ)

କଳାପାହାଡ଼—ଓଡ଼ିଶାର ରାଣୀ—ମୁକୁନ୍ଦ ଦେବର ପାଟମହିଷୀ—ହିନ୍ଦୁର ରାଣୀ ବିଧର୍ମୀର ପଦତଳେ ଉପହାର ଦେବ—ପୂଜା କରିବ ବିଧର୍ମୀ ଶାସକକୁ । ସାବାସ୍, ଆଉ ବାରବାଟୀ ? ନବଚଳ ପ୍ରସାଦ ? କୋଇ ହାସ୍ପ ?

(ସୈନିକର ପ୍ରବେଶ ଓ ଅଭିବାଦନ)

କଳାପାହାଡ଼—ରାଜମହଲ ଲୁଟ୍ କର । ଦୁର୍ଗ-ପ୍ରାଚୀର ଭାଙ୍ଗିଦିଅ । ଯେଉଁଠି ହିନ୍ଦୁ ମନ୍ଦିର ଦେଖୁଛ, ଚୂରମାର କର । ହିନ୍ଦୁର ଘର ଲୁଣ୍ଠନ କର, ଅତ୍ୟାଚାର କର; ଆଉ ହିନ୍ଦୁର ଇଷ୍ଟଦେବତା ଜଗନ୍ନାଥ—ଜଗନ୍ନାଥ ! ନାଁ ନାଁ—ତୁମ୍ଭେମାନେ ନୁହଁ, ମୁଁ ନିଜେ । ମୁଁ ନିଜେ ବିଧର୍ମୀ କଳାପାହାଡ଼ ମନ୍ଦିରକୁ ଧୂଳିସାତ୍ କରିବ । ଜଗନ୍ନାଥ ମୂର୍ତ୍ତି ପୋଡ଼ି ଭସ୍ମ କରିବ । ଛପନକୋଟି ଭଣ୍ଡାର ଲୁଣ୍ଠନ କରିବ । ମୋ ଆଖିଆଗରେ ଜଗନ୍ନାଥ ନାମ ଲୋପ କରିବ ଫୌଜ ତିଆର କର । କଳାପାହାଡ଼ ହିନ୍ଦୁ ମନ୍ଦିରର ଗର୍ବ ଚୂର୍ଣ୍ଣ କରିବ—ହିନ୍ଦୁ ଦେବତାର ନାମ ଲୋପ କରିବ । ଜଗନ୍ନାଥ ମୂର୍ତ୍ତିର ସତ୍ତା ଶେଷ କରିବ । ସେ ବିଧର୍ମୀ । ସେ ହିନ୍ଦୁର କାଳାନ୍ତକ ଯମ । ତାର ଧର୍ମ ମୁସଲମାନ । ବୋଲ ସୈନିକ—"ଆଲ୍ଲା ହୋ ଆକ୍‌ବର ।"

(ଦୂରରେ ପ୍ରତିଧ୍ୱନିତ ହେଲା ସମୂହ କଣ୍ଠ—"ଅଲ୍ଲା ହୋ ଅାକବର")

(କଳାପାହାଡ଼ ସିଂହାସନ ଉପରେ ବସି ପଡ଼ିଲେ—ତରବାରୀ ଉନ୍ମୋଚନ କରି ବହୁ ସୈନିକ ଆସି ସମ୍ମାନ ଦେଖାଇଲେ "ଆଲ୍ଲା ହୋ ଆକ୍‌ବର" ଧ୍ୱନି ସହ ।)



# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

( ସ୍ଥାନ—ବାରବାଟୀ ଦୁର୍ଗ ସମ୍ମୁଖ । ସମୟ—ରାତ୍ରିର ଶେଷ ପ୍ରହର । ଘନ ଅନ୍ଧକାର—ଝଡ଼ । ଝଞ୍ଜାର ବେଗ ଲକ୍ଷିତ ହେଉଛି—ପୃଥିବୀ ଯେପରି ପ୍ରଳୟର ସନ୍ନିକଟ । ଚତୁର୍ଦ୍ଦିଗରେ କାଳ-ନିଶାର ଆବରଣ । ଦୂରରୁ ଶୁଭୁଛି ନାରୀ କଣ୍ଠରୁ କରୁଣ ସଙ୍ଗୀତର ମୂର୍ଚ୍ଛନା ।)

(ଗୀତ)

ହାୟ ଜଗଦୀଶ୍ୱର ॥ ୦ ॥

ମରଣ ଦଳନେ ପୀଡ଼ିତା ଧରଣୀ
ନନ୍ଦଣେ ନୟନେ କାହିଁତ ଶରଣୀ
ଆଖି ଆଗେ ଝଳେ ରତନ ଆସନ
ରଖ ଅବା ତୁମେ ମାର ।
ନାହିଁ ନାହିଁ କେହୁ ଭରସା ଏକାଳେ
ଶରଣ ଲୋଡ଼ିବ ଯାର । ୧ ।

ସୁଖର ସ୍ୱପନ ଯାଇଛି ଉଭାଇ
ଶିଙ୍ଘହରା, ଗୋଠ ଫଟା ଭାଇ ଭାଇ
ଶ୍ମଶାନ ହେଲାଣି-ରାଜପୁରୀ ଆଜ
ଶୁଭେ ଦେଶେ ହାହାକାର ।
କାହିଁ ଯିବ, କାହିଁ ରହିବ ହେ ଦେବ ।
ସାର ଖାଲି ଲୁହ-ଧାର । ୨ ।

(ଗୀତ ମଧ୍ୟରେ ଦୁର୍ଗର ପ୍ରାଚୀର-ଗାତ୍ର ଉନ୍ମୋଚିତ ହେଲା—ବାହାର ଆସିଲେ ପୂର୍ବର ସେହି ବୃଦ୍ଧ ଦୁର୍ଗବାରଣ—ସେତେବେଳକୁ ସେ ବକଲାଙ୍ଗ ନୁହନ୍ତି । ସେ ଆସି ଗୀତର ସ୍ୱରକୁ କାନେଇ ଦୁର୍ଗ-ମଧ୍ୟକୁ ଚାହିଁଲେ ନିରେଖି । ଧୀରେ ଧୀରେ ଭିତରକୁ ଆସୁଥିଲେ ଜଣେ ନାରୀ, ତାଙ୍କର କେଶ ମୁକୁଳା, ପରିଧାନ ମଳିନ, ବାମ-କଣ୍ଠରେ ବିଷାଦ ସଙ୍ଗୀତ । ଦୁର୍ଗ-ତୋରଣ ନିକଟରେ ବୃଦ୍ଧ ତାଙ୍କର ନିକଟବର୍ତ୍ତୀ ହୋଇ ପ୍ରଣାମ କଲେ । )

ବୃଦ୍ଧ—(ଆଶ୍ଚର୍ଯ୍ୟ ହୋଇ) ଏତେବେଳେ, ଏ ଅବସ୍ଥାରେ ଆପଣ ଦୁର୍ଗରୁ କୁଆଡ଼େ ବାହାରିଛନ୍ତି ମାଆ ରାଜଲକ୍ଷ୍ମୀ ?

(ଅଦୂରରୁ ଶୁଣାଗଲା—"ଆଲ୍ଲା ହୋ ଆକବର")

ରାଜଲକ୍ଷ୍ମୀ—(ବୃଦ୍ଧଙ୍କ ମୁଖ ଆଗରେ ହାତ ଦେଖାଇ ନୀରବ ରହିବାକୁ ନିର୍ଦ୍ଦେଶ ଦେଲେ) ନା ନା, ଆଉ ରାଜଲକ୍ଷ୍ମୀ ବୋଲି କୁହ ନାହିଁ ଦୁର୍ଗବାରଣ ! ଶୁଣୁଛ ? (ଭିତରକୁ ଠାରି) ଏ କଅଣ ଶୁଭୁଛି ? ଆରତିର ଘଣ୍ଟି, ଘଣ୍ଟା ନୁହେଁ । ବୁଝି ପାରୁଛ—ଏ ଶବ୍ଦର ରହସ୍ୟ ? ଲକ୍ଷ୍ମୀର ନାମୋଚ୍ଚାରଣ କର ନାହିଁ । ପବନର କାନ ଥାଇପାରେ । ଚୁପ ହୁଅ, ଚୁପ ହୁଅ । ଅତ୍ୟାଚାର, ଅନାଚାର, ଅଧର୍ମ, ଦେବତାର ଅବମାନନା । ଆଉ ରାଜଲକ୍ଷ୍ମୀର ସ୍ଥାନ କାହିଁ—କହ ?

ବୃଦ୍ଧ—ଆପଣ ଚାଲିଗଲେ ଏ ଦୁର୍ଗର ଅବସ୍ଥା—

ରାଜଲକ୍ଷ୍ମୀ—(କଥାରେ ବାଧାଦେଇ) ସମସ୍ତେ ଚାଲିଗଲେଣି—ଆଉ ତ କେହି ନାହିଁ । କେତେ ଅତ୍ୟାଚାର ସହିପାରେ ? ମୋର ହାତ, ଗୋଡ଼, ମୁଣ୍ଡ ଭାଙ୍ଗିଯାଇ ଛିନ୍ନଖଣ୍ଡ ହୋଇଯାଇଛି । ଆଉ ସେ ପୂର୍ଣ୍ଣାଙ୍ଗ ଉତ୍କଳ ନାହିଁ । ମୁକୁନ୍ଦ-ଦେବଙ୍କ ପରେ ପରେ ଉତ୍କଳ ଜନନୀର ଅଙ୍ଗ ଭଙ୍ଗଘଟିଯାଇଛି । ଆଉ ମୋର ଆସନ କାହିଁ ? କାହିଁ ସେ ପବିତ୍ର ସିଂହାସନ ? ଉତ୍କଳ ସେ ଛିନ୍ନଖଣ୍ଡରେ ବିଭକ୍ତ । ଆକାଶକୁ ଅନାଅ । ଦିଶୁ ନାହିଁ ? ପ୍ରଳୟର ପ୍ରଚଣ୍ଡ ତାଣ୍ଡବଲୀଳା ! ସବୁ ତ ଅଙ୍ଗେ ଅଙ୍ଗେ ଲାଗିଛି ଦୁର୍ଗବାରଣ ! ଆଉ କାହାକୁ ପଚାରୁଛ ? ଯାଉଛି—ଆଶ୍ରୟ ଖୋଜି । ପର-ପଦଦଳିତ ସିଂହାସନରେ ଆଉ ମୋର ସ୍ଥାନ ନାହିଁ ।

ବୃଦ୍ଧ—କିନ୍ତୁ, କେଉଁ ଆଡ଼କୁ ବାହାରିଛନ୍ତି ମାଆ ଆମମାନଙ୍କୁ ଛାଡ଼ି ?

ରାଜଲକ୍ଷ୍ମୀ—(ମହାନଦୀ ଆଡ଼କୁ ଠାରି) ଯାହାର ଅନନ୍ତ ଗର୍ଭରେ ଶୋକଦଗ୍ଧ ଏ ଦୁଃଖ, ଏ ଗ୍ଲାନି, ଏ ଅପମାନ ପାସୋରିଦେଇ ପାରିବି, ତାହାରି କୋଳକୁ ଯାଉଛି । ଏଇ ଦେଖ ସେ ବିଶାଳ ଗର୍ଭ—ନୀରବ, ନିର୍ବାକ୍, ନିସ୍ପନ୍ଦ । କଳି-କଲ୍ମଷ-ନାଶିନୀ ଚିତ୍ରୋତ୍ପଳା—କଳିର ଗଙ୍ଗା—ଏଇ ମହାନଦୀ ।

ବୃଦ୍ଧ—ଏ କଅଣ କରୁଛନ୍ତି ଆପଣ ?

ରାଜଲକ୍ଷ୍ମୀ—ହଁ ଦୁର୍ଗବାରଣ, ସେଇ ମହାନଦୀ ମୋର ଏକମାତ୍ର ଭରସା । ମୋର ଦୁର୍ଦ୍ଦିନର ଅଭେଦ୍ୟ-ଆଶ୍ରୟ ଦୁର୍ଗ ।

ବୃଦ୍ଧ—ମାଆ, କେତେ ଦୁର୍ଦ୍ଦିନ ତ ଆସିଛୁ, ଯାଇଛୁ । ଋଥଚକ୍ରର ଆବର୍ତ୍ତନପରି ଦିନ ଆସେ—ଦିନ ଯାଏ । ଆପଣ ଧୈର୍ଯ୍ୟ ହରାଇ ବସିଲେ, ଦେଶର ଗତି କଅଣ ହେବ ଦେବି !

ରାଜଲକ୍ଷ୍ମୀ—ହଁ, ଦିନ ଆସିଛୁ—ଦିନ ଯାଇଛୁ । କିନ୍ତୁ, ଏଇ ଯେ ଦିନ ଆସିଛୁ—ଏ ଦିନର ପରିଣତି କେବଳ ଝଡ଼, ଝଞ୍ଜା, ବଜ୍ର, ଭୂମିକମ୍ପ, ପ୍ଲାବନ, ମଡ଼କ, ଅନ୍ୟାୟ ଆଉ ଅତ୍ୟାଚାର ! ଓଃ......ଓଃ ଭବିଷ୍ୟତର ସେ ଦୁର୍ଦ୍ଦିନ କଳ୍ପନାରେ ଶିହରିଉଠେ ଶରୀର ମୋର । ଏଣିକି ଶୋଷଣର ନାମାନ୍ତର ହେବ ଶାସନ । ସନ୍ତାନର ସେ ଦୁରବସ୍ଥା ଦେଖି ସହିପାରିବା ଭଳି ଛାତିର ରକ୍ତ ମୋର ନାହିଁ । ଏ ଦୁର୍ଦ୍ଦିନର ପରିବର୍ତ୍ତନ ସହଜ ନୁହେଁ ଆଉ । ଏହାର ଭବିଷ୍ୟତ କୁହେଳିକାଚ୍ଛନ୍ନ – ଦୁର୍ଭେଦ୍ୟ ଅନ୍ଧକାର । ଏ ଅମାବାସ୍ୟାର ପ୍ରତିପଦ ବହୁ ବିଳମ୍ବରେ ଫେରିଲେ ଅବା ଫେରିପାରେ । କିନ୍ତୁ ସେତେ-ବେଳକୁ ଉତ୍କଳର ଗୌରବ-ଗରିମା ଧୂଳିସାତ୍ ହୋଇଯାଇଥିବ । ପାସୋରି ଦେଇ ସାରିଥିବ ଉତ୍କଳ ତାର କଳା, ତା'ର କୌଳିନ୍ୟ, ତା'ର ବୀରତ୍ୱ-ଗୌରବ, ତା'ର ସ୍ୱାଧୀନତା—ଯାହା ତାକୁ ଆଜି ଜଗତ ଚକ୍ଷୁରେ କରିଛି ଗରିସ୍ଥାନ୍—ମହୀୟାନ୍ ।

ବୃଦ୍ଧ—ରକ୍ଷାର ଉପାୟ କିଛି ନାହିଁ ମା ?

ରାଜଲକ୍ଷ୍ମୀ ନା—ଦେଶରେ ଆଉ ସେ ଏକତା ନାହିଁ । ଘରେ ଘରେ ଭ୍ରାତୃତ୍ୱବାଦ । ନୀଚସ୍ୱାର୍ଥ-ଲୋଭରେ ଦେଶରେ ଚାଲିଛି ରହିଛି ହତ୍ୟା, ବିଶ୍ୱାସିକା, ଅତ୍ୟାଚାର, ଜାତିବିରୋଧୀ ମନୋବୃତ୍ତି । ଆଉ ଉପାୟ ନାହିଁ—ରକ୍ଷା ନାହିଁ । ଶୀଘ୍ର ନାହିଁ—ରକ୍ଷା ନାହିଁ । ଶୀଘ୍ର ଆତ୍ମଗୋପନ କର । ଦେବତା ଉପବିଷ୍ଟ ସିଂହାସନରେ ଦାନବର ଜଘନ୍ୟ କୂଟଚକ୍ରାନ୍ତ ଖେଳିଗଲାଣି । ଆଉ ନାହିଁ । ମୁଁ ବାହାରିଲି । ଯାଅ । (ଚାଲି ଯାଉଥିଲେ)

ବୃଦ୍ଧ—ମା—ମା, ଏଇ କଅଣ ତେବେ ଶେଷ ? ଆଉ ମୋର ଗର୍ବ ଗୌରବର ସମସ୍ତ ଫେରିବ ନାହିଁ ଦେବି !

ରାଜଲକ୍ଷ୍ମୀ—କହିଲି ତ—ବହୁ ବିଳମ୍ବ । ନିକଟ ଭବିଷ୍ୟତରେ ନୁହେଁ । ବାହାରେ ଆଉ ଅପେକ୍ଷା କର ନାହିଁ । ଶୀଘ୍ର ନିଜ ସ୍ଥାନକୁ ଚାଲିଯାଅ । ପଥରଛାତିକୁ ତମର ଲୁହରେ ତରଳାଇବାକୁ ଶିଖ । ବଜ୍ରଠାରୁ ଟାଣ ପଦାଘାତ ସହିବାକୁ ଦେହକୁ ଆହୁରି କଠିନ କରି, ଚାହିଁରୁହ ସେଇ ଦୂର ଦିଗ୍‌ବଳୟର ଶୀର୍ଘ ଭବିଷ୍ୟତକୁ । କ୍ଷୟିତର ନିର୍ଦ୍ଦେଶ !

(ନୀରବରେ ଦେବୀ ଚରଣ ସ୍ପର୍ଶ କରି ବୃଦ୍ଧ ଫେରିଗଲେ ପ୍ରାଚୀରତୋରଣ ନିକଟକୁ । ଶଙ୍କାହୀନ ପରି କେବଳ ସ୍ମୃତି ରହିଲେ ସେ ଶୂନ୍ୟକୁ । ରାଜଲକ୍ଷ୍ମୀ ପୁଣି ଗାଇ ଗାଇ ଅଦୃଶ୍ୟ ହେଲେ । )

(ଗୀତ)

ଗରଜେ ବାଦଲ ଭୀମ ଗରଜନେ
ଘନ ତିମିର ଘେରି ଆସେ ଭ । ୦ ।
ଲୁପ୍ତ ଶଶଧର, ସୁପ୍ତ ତାରା
ଦୀପ୍ତ ରବିକର, ଦୀପ୍ତି-ହରା
କଳ-ମୁଖର ଗିରି-ଗହନ ପ୍ରାନ୍ତର
ଥରଇ ଦାନବ ହାସେ ତ । ୧ ।
ନାଚେ ଧୂମକେତୁ ବିକଟ, ଯୋଗିନୀ
ଚଣ୍ଡ ତାଣ୍ଡବେ ତ୍ରସ୍ତ ଧରଣୀ,
ତାହିକରି ଦୀନବନ୍ଧୁ, ହେ ହରି !
ଆସି ଦୁର୍ଦ୍ଦିନ ତ୍ରାସେ ତ । ୨ ।



## ଦ୍ୱିତୀୟ ଦୃଶ୍ୟ

( ବାରବାଟୀ ଦୁର୍ଗ ସମ୍ମୁଖସ୍ଥ ପଥ, ଦୁଇ ଜଣ ନାଗରିକ ପ୍ରବେଶ କଲେ । )

୧ମ—ହଇ ରେ, ଆମ ରାଜା ଏବେ କିଏ ? କାହା କଥା ମାନି ଚଳିବା ଭଇ ?

୨ୟ—କୁଆଡ଼େ ଗଲେ ସେ ମହାରାଜାମାନେ ! ଏଇ ବାରବାଟୀ ଥିଲା କ'ଣ—ଏବେ ହେଲା କ'ଣ ?

୧ମ—ଆରେ, ଅଢ଼େଇ ଦିନରୁ ଗୋଟାଏ ଗୋଟାଏ ରାଜା । ଆଫଗାନ୍ ଆସିଲା, ଓଃ, କି ପ୍ରତାପ, କି ଅତ୍ୟାଚାର ! ଦାଉଦଖଁ, ସବୁଠାରୁ ବଳି ପଡ଼ିଲା । ଏବେ ଟୋକା ବୟସ, ସେଥିରେ ଓଡ଼ିଶା ପରି ଭୂଇଁରେ ରାଜୁତି ପାଇ ତା'ର ତ କାନରେ ତେଣା ଲଗିଲା ରେ !

୨ୟ—ଆକବର ବାଦସା ଭଲ । ଗୋଟାଏ ସେମିତି ସରସ ଲୋକ ଦେଖି ଏ ରାଜକୁ ପଠେଇଥାନ୍ତେ ?

୧ମ—ତାର କଅଣ ହେଲା ? ତୋଡ଼ରମଲ୍ଲ ବାହାଦୁର କଟା ମୁଣ୍ଡ ମୋଗଲ ଦର-
ବାରରେ ନେଇ ଭେଟିଲେ । ବାଦଶା ଭଲା ତାଙ୍କୁ ଆମ ଓଡ଼ିଶାର ରାଜା
କରି ରଖିଥାଆନ୍ତେ ?

୨ୟ ଆରେ ସେ କଥା କାହିଁକି ଭାବୁଛୁ ? ଦିଲ୍ଲୀ ଦରବାରି ସୁଖ, ସେଠା ମଉଜ
କଅଣ ଏଠି ଅଛୁ ? ସେ ଆସିଲା ଓଡ଼ିଶାକୁ ତା ମନ ତ ଉଡ଼ୁଉଡ଼ୁ ହେଲା
ଦିଲ୍ଲୀ ଯିବାକୁ । ଏଠା ଲୋକଙ୍କ ଭଲ ମନ୍ଦ ସାଙ୍ଗରେ ତାଙ୍କର ଇଲାକା
କଅଣ ? ଅଇଲା ମାଳ — ମାଇଲା ତାଳ ।

୧ମ—ସେଇଆ ପରା ! ତୋଡ଼ରମଲ୍ଲ ଓଡ଼ିଶା ଛାଡ଼ିବା ପଛେ ପଛେ ଫେର୍ ସେଇ
ପଠାଣ-ଗୋଳ ଚାଲିଛି ଚାରିଆଡ଼େ ! ଗଣ୍ଡା ଗଣ୍ଡା ସୁବାଦାର ଆସୁଛନ୍ତି ।
ଆଜି ସେ ଅଛୁ, କାଲିକି ସେ ନାହିଁ । 'ସଞ୍ଜେ ଫୁଟି ସକାଳେ ଯା—ନହି-
ଫୁଲପରି ଆୟୁଷ ପା' ନେଇ ଗୋଟାଏ ଗୋଟାଏ ଆସୁଛନ୍ତି । ଏବେ କରିବା
କ'ଣ ? ଜଣକେ ତ ଗୋଟାଏ ରାଜ୍ୟ । ଏଇ ତ ମାନସିଂହ ଆସି କିଲ୍ଲାରେ
ଆସନ ଜମେଇଛନ୍ତି । ଦେଖ—ଫେର କୋଉ ପାଣି କୋଉଠିକି ବୋହୁଛି !

୨ୟ—ଜଗନ୍ନାଥ ଦର୍ଶନକୁ ଯାଇଥିଲେ ପରା ମାନସିଂହ—ବାହୁଡ଼ିଲେଣି ?

୧ମ—ହଁ, କାଲି ରାତିରେ ତ ନାଗରା ବାଜୁଥିଲା । ତେଣେ ମୁକୁନ୍ଦ ଦେବଙ୍କ ପୁଅ
ରମେଇ ରାଉତରାୟ ରାମଚନ୍ଦ୍ର ଦେବ ହୋଇ ପୁରୀରେ ଗାଦି ମାଡ଼ି
ବସିଛନ୍ତି । କଅଣ ହେଲା ପୁରୀ କଥା ବୁଝାପଡ଼ୁ ନାହିଁ ।

୨ୟ—ଗଡ଼ ଭିତରକୁ ଚାଲ । ବଳେ କଥା ଫୁଟ ଫାଟ ହବ ନାହିଁ କି ? ବରଷା
ଆଉଛି ତ ଛତା ନ ଟେକିଲେ ଚାଲୁ ନାହିଁ ରେ ଭାଇ ! ଆଉ ଅନେଇଲେ
କ'ଣ ହବ ରେ ? ଆ ।

୧ମ—ଆରେ ସେ—ଯେତେବେଳେ ଯିଏ ।

(ଦୁହେଁ ଚାଲିଗଲେ)

•

## ତୃତୀୟ ଦୃଶ୍ୟ

(ବାରବାଟୀ ଦୁର୍ଗାଭ୍ୟନ୍ତର ମାନସିଂହଙ୍କ ଦରବାର)

ମାନସିଂହ—(ପତ୍ର ପାଠ କରୁ କରୁ) ଏ ପର୍ଯ୍ୟନ୍ତ ତେବେ ଜଗତ ସିଂହ ଗଡ଼
ଦଖଲ କରିପାରି ନାହିଁ ? ରାମଚନ୍ଦ୍ର ଦେବ ମନେକଲେ ମାନସିଂହ ତାଙ୍କର
ସମାନାସ୍କନ୍ଧ ନୁହେଁ ! କେଶୁ ନିଜେ ନ ଆସି ତାଙ୍କ ପୁଅକୁ ମୋର ସାକ୍ଷାତ
ଲାଗି ପଠାଇ ଦେଇ ନିର୍ଶ୍ଚିନ୍ତ ହୋଇ ବସିଛନ୍ତି ?

ସଭାସଦ୍—ତାଙ୍କୁ ତ ନକେ ଆସି କଟକ କିଲ୍ଲାରେ ହାଜର ହେବାକୁ ପରୱାନା ଯାଇଥିଲା, ତା' ମଧ୍ୟ ସେ ଶୁଣିଲେ ନାହିଁ। ଭଲରେ ନୋହିଲା—ଏବେ ମନ୍ଦର ସେ ବଳେ ଆସିବେ। ଖୋରଧାଗଡ଼ ପାଖ ଆଖ କିଲ୍ଲାସବୁ ଦଖଲ ସରିଲାଣି। ଆଜକାଲି ଖୋର୍ଦ୍ଧାଗଡ଼ ମଧ୍ୟ ଅମଲକୁ ଆସିଯିବ।

ମାନସିଂହ—ପଠାଣମାନଙ୍କର ଖବର କିଛି ମିଳିଛି ?

ସଭାସଦ୍—ନାହିଁ ଅଜ୍ଞା ! ସୁଲେମାନ ଆଉ ଉସମାନ୍ ଦୁହେଁ ମାଲଣାପୁର ଯୁଦ୍ଧରେ ହାରିବା ପରେ ଆଉ ସେମାନଙ୍କର ସନ୍ଧି ପନ୍ଧି ନାହିଁ। ଆପଣ ସାରଙ୍ଗଗଡ଼ ଅଧିକାର କରିବା ପରେ, ଯାହା ଅବା ଥିଲେ, ସମସ୍ତେ ଦଉଆବାଟେ ପଳାଇଛନ୍ତି। ଆଳି ଦୁର୍ଗ ତ ଆମ ହାତକୁ ଆସିଛି। ପଠାଣମାନେ ଏଇଥର ଶେଷ ପାଇଲେ ଓଡ଼ିଶାରୁ।

ମାନସିଂହ—ବେଶ୍। ଖୋରଧା ରାଜା ତାଙ୍କୁ ସାହାଯ୍ୟ କରୁଥିଲେ, ଅନ୍ୟାନ୍ୟ ଗଡ଼ଜାତ ରାଜାମାନଙ୍କୁ ଭେଳାଇ। ବର୍ତ୍ତମାନ ସେଇ ଖୋର୍ଦ୍ଧାଗଡ଼ ଦଖଲ କର —

(ହଠାତ୍ ଲେଖ ନେଇ ବାଦସାହଙ୍କ ଦୂତ ପ୍ରବେଶକରି ଅଭିବାଦନ କଲା)

ଦୂତ- ରାଜା ମାନସିଂହଙ୍କର ଜୟ ହେଉ। ମହାମାନ୍ୟ ବାଦଶାହଙ୍କର ଜରୁରୀ ଫରମାନ୍—(ଲେଖ ବଢ଼ାଇ ଦେଲେ)

ମାନସିଂହ—(ଲେଖ ନେଇ ପଢ଼ି) କୋଇ ହାୟ !

(ଜଣେ ଭୃତ୍ୟ ପ୍ରବେଶ ଓ ଅଭିବାଦନ କଲା)

ମାନସିଂହ—ଜାହାଁପନାଙ୍କର ଆଦେଶ ମୋର ଶିରୋଧାର୍ଯ୍ୟ। ତୁମେ ଯାଇ ବର୍ତ୍ତମାନ ବିଶ୍ରାମ କର ଦୂତ। (ଭୃତ୍ୟ ପ୍ରତି) ଦିଲ୍ଲୀ ଦୂତକୁ ବିଶ୍ରାମାଗାରକୁ ନେଇ ଯାଅ

ଭୃତ୍ୟ—ଯୋ ହୁକୁମ। (ଉଭୟେ ପ୍ରସ୍ଥାନ କଲେ)

ମାନସିଂହ—(ପୁଣି ପୂର୍ବପରି ଚିଠି ପଢ଼ିବସିଲେ)

ସଭାସଦ୍—ଖବରରେ କି କିଛି ବିଶେଷ କାରଣ ଅଛି ?

ମାନସିଂହ - ଖୋରଧା ଅବରୋଧ ସମ୍ବାଦ ଆକବର ବାଦଶାହଙ୍କ ନିକଟ ପହଞ୍ଚିଛି।

ସଭାସଦ୍—ଜାହାଁପନା ନିଶ୍ଚୟ ଆପଣଙ୍କ ବୀରତ୍ୱକୁ ପ୍ରଶଂସା କରିଥିବେ।

ମାନସିଂହ—ନାଁ, ପଠାଣମାନଙ୍କୁ ସମ୍ପୂର୍ଣ୍ଣରୂପେ ପରାସ୍ତ କରି ସାରିବା ପରେ ଓଡ଼ିଆ ରାଜାମାନଙ୍କୁ ଦମନ କରିବା ମତକୁ ବାଦଶାହ ପସନ୍ଦ କରନ୍ତି ନାହିଁ। ବିଶେଷ କରି ଖୋରଧାଗଡ଼ ଅବରୋଧ ଉଠାଇ ଆଣିବାକୁ ସେ ଆଦେଶ

ଦେଇଛନ୍ତି । ମିଷ୍ଟ ସ୍ୱରରେ ରାଜାମାନଙ୍କ ସଙ୍ଗେ ବ୍ୟବହାର କରିବାକୁ ସାବଧାନ କରାଇ ଦରବାରରୁ ପତ୍ର ଆସିଛି ।

ସଭାସଦ୍—ତା' ହେଲେ—

ମାନସିଂହ—ଖୋରଧା ଅବରୋଧ ଉଠାଇ ଆଣିବାକୁ ହେବ । ମନ୍ତ୍ରଣା କକ୍ଷକୁ ଆସ ।

(ଆସନ ତ୍ୟାଗ କଲେ)



## ଚତୁର୍ଥ ଦୃଶ୍ୟ

(ପୁରୀ ବଡ଼ଦାଣ୍ଡ—ମନ୍ଦିର ସମ୍ମୁଖ, ଜଣେ ପଣ୍ଡା ତର ତର ହୋଇ ମନ୍ଦିର ଭିତରକୁ ପ୍ରବେଶ କରୁଥିବାବେଳେ ଆଉ ଜଣେ ପୁରବାସୀ ତାଙ୍କୁ ପଛରୁ ଡାକୁଛନ୍ତି ।)

ପୁରବାସୀ—ହଇ ହେ ତଳଚେରୁ ! ଆହେ ଶୁଣ, ଶୁଣ ହେ ପଦେ କଥା ଶୁଣ ।

୧ମ ପଣ୍ଡା—(ଫେରି ଚାହିଁ) କଅଣ କଉ ଦାସେ ! ମୁଁ ପରା ଦେଉଳକୁ ବାହାରିଛି । ରାମଚନ୍ଦ୍ର ଦେବ ବିଜେ ହେବେ ହେ । ଏତେକାଳେ ପୁଣି ବଡ଼ ଦେଉଳ ଭାଗ୍ୟ ଫିଟିଛି ।

ଦାସେ—ଦଅଁ ଗଢ଼ା ସରିଲେଣିଟି ?

ତଳଚେରୁ—ମ ନୂଆ ଦଅଁ ଗଢ଼ସାର ବରଷର ମହାନ୍ତ ଗଙ୍ଗା କୂଳରେ କଳାପାହାଡ଼ ପୋଡ଼ି ଦଉ ଦଉ ଦଅଁଙ୍କର ଯୋଉ ନାଭିମଣ୍ଡଳକୁ ଆଣିଥିଲେ ସେ ପରା ଆଜି ଘଟ ପ୍ରବେଶ କରିବେ ।

ଦାସେ—ରାମଚନ୍ଦ୍ର ଦେବ ଏକା କାଳକାଳକୁ କୀର୍ତ୍ତି ରଖିଗଲେ । ବଡ଼ ଭଗତ ଅଂଶ ରଜା । ସେଇଥିକି ସମସ୍ତେ ପାଦପୂଜା କରୁଛନ୍ତି । ନାଭି ଆପଣା ଅନୁକୂଳ କେତେବେଳେ ?

ତଳଚେରୁ—(ଆଙ୍ଗୁଠି ଠାରି) ଶୁଣନ୍ତୁ ! (ଅଦୂରେ କୀର୍ତ୍ତନ ଶବ୍ଦ) ହେଉଛି ପରା କୀର୍ତ୍ତନ ସାଙ୍ଗରେ ନାଭିମଙ୍ଗ ଅଣା ହେଉଛନ୍ତି । ମତେ ଆଉ ତର ନାହିଁ । ଆସ ଯିବ ଦେଉଳ ଆଡ଼କୁ !

ଦାସେ—ସେଇ କଥା ବାରିବାକୁ ଆସିଥିଲି, ମଠ କେତେ ହବ ବୋଲି ସେ—ଯୋଗକୁ ହେଉଛି ତ କୀର୍ତ୍ତନ ଆସିଗଲାଣି । ଚାଲ ଯିବା—ଆଜି କଅଣ ଦର୍ଶନ ମିଳିବଟି ?

ଭଲଗ୍ରେ—ଏ ସବୁ ନାଚକାଣ୍ଡ ବଢ଼ୁ ବଢ଼ୁ ଟିକଏ ମଠ ହେବ । ସେଇଠୁ ମାଘସ୍ନାନ ହୋଇ ସାନ୍ଧାଣ ମେଳ ଆଉ ନ ହେଉଚ ? କୀର୍ତ୍ତନ ନିକଟ ହେଲା)

ଦାଦେ—ହଉ, ଘଡ଼ିଏ ହ'ଘଡ଼ି ମଠ ସିନା, ଏତିକି ତ ! ଦର୍ଶନ ତ ମିଳିବ ।
ଚାଲ—(ଦୁହେଁ ଚାଲିଗଲେ)

(କୀର୍ତ୍ତନ ସହ ଦଳେ ଲୋକ ଆସିଲେ—ଜଣେ ହାତରେ ଡାଲାରେ ନାଲିମଣ୍ଡଳ ପାଟକନା ଘୁଡ଼ା ହୋଇ ଅଣା ହେଉଅଛି । )

କୀର୍ତ୍ତନ

(ଗୀତ)

ନବଘନ କାଳାବଦନ
କାହିଁ ଲୁଚିଲଛ ଜଗଜ୍ଜୀବନ ? ।୦।

କି ଘେନି ଚଳିଲ ନୀଳାଚଳ ପୁର
ନାମ ବହିଛ ପତିତପାବନ ।
ଭକତ ଡାକନ୍ତୁ ମୁଦି ଦେଲ କାନ
ଏ କି କଥା କହ ଦୀନଶରଣ ।୧।

ବଡ଼ ଦେଉଳରେ ବିଜେ କର ପ୍ରଭୁ
ପବିତ୍ର ହେଉ ଏ ପାପ ନୟନ ।

(ସମସ୍ତେ ମନ୍ଦିର ଭିତର ଆଡ଼କୁ ଗଲେ)



## ପଞ୍ଚମ ଦୃଶ୍ୟ

(ବାରବାଟୀ ଦୁର୍ଗ—ସୁବେଦାର ହାସିମ୍ ଖାଁଙ୍କ ଦରବାର—ଦୃଶ୍ୟପଟ ଉତ୍ତୋଳିତ ହେବା ବେଳକୁ ଅଟ୍ଟହାସ୍ୟ ଶୁଭୁଥିଲା । ଯଥାଯୋଗ୍ୟ ଆସନରେ ବସିଥିଲେ ସୁବାଦାର ହାସିମ୍ ଖାଁ, କେଶୋଦାସ ଓ ପରିଷଦଗଣ)

ହାସିମ୍—ଖୁବ୍ ଖୁବ୍ କଲେ ଆପଣ କେଶୋଦାସ !

କେଶୋଦାସ—ଆପଣ ମୋର ମହତ୍ତ୍ୱ ବଢ଼ାଇ ଦେଲେ ସୁବାଦାର ସାହେବ ! ଗୋଟିଏ ଜଣ ମାତ୍ର ଘୋଡ଼ସବାର ନେଇ ମୁଁ ଖୋରଧାଠାରୁ ପୁରୀରେ ଯେତେ-

ବେଳେ ମନ୍ତ୍ରୀଙ୍କ ମୋର ମନେ ହେଲା ସେଇଠି ସବୁ ଶେଷ ହୋଇଯିବ । କଟକକୁ ସାହାଯ୍ୟ ପହଞ୍ଚି ନ ଥିଲେ ଅବସ୍ଥା କ'ଣ ଯେ ହୋଇଥାଆନ୍ତା, କହିହେଉ ନାହିଁ ।

ସୁବାଦାର—ରାଜା ପୁରୁଷୋତ୍ତମ ଦେବଙ୍କ ଝିଅ ବାଦସାହାଙ୍କର ହାରେମରେ, ଭଉଣୀ କେଶୋଦାସଙ୍କ ସ୍ତ୍ରୀ, ତିନ ଲକ୍ଷ ନଗଦ ଭେଟି ବାଦସାହାଙ୍କର, ଲକ୍ଷେ ଟଙ୍କା ଆପଣଙ୍କୁ ଆଉ ଆପଣଙ୍କ ଲୋକଙ୍କୁ—ସ୍ୱା ଛଡ଼ା ଜଗନ୍ନାଥ ମନ୍ଦିର ଲୁଟ୍ । ଏଭଳି କାମ ତ କେହି କରି ନାହିଁ । ବାଃ, ବାଃ ବୀର ବୋଲି ଅଲବତ୍ ମାନିବାକୁ ହେବ ଆପଣଙ୍କୁ କେଶୋଦାସ୍ ।

ପାରିଷଦ—ଖାଲି ବୀର ନୁହଁନ୍ତି ସୁବାଦାର ସାହେବ ! ସାହସ ଯେମିତି, କୌଶଳ ବି ସେମିତି । ଖୋରଧା ରାଜା ଆଗରୁ ଜାଣିଥିଲେ ହୁଏତ ଅସୁବିଧା କିଛି ହୋଇଥାନ୍ତା । କେଶୋଦାସ ଦର୍ଶନ କରିବାକୁ କହି ଦେଉଳ ଭିତରେ ପଶି ଦେଉଳକୁ ଗୋଟାଏ ଦୁର୍ଗ ବନାଇ ଦେଲେ । ଏ କଅଣ କମ୍ ବୁଦ୍ଧିର ଖେଳ ?

ସୁବାଦାର—ଆରେ ! ବାଦସାହାଙ୍କ ଦରବାର ଛାଡ଼ି ଯେ ଆମେ କେତେଜଣ ଏତେ-ଦୂର ଓଡ଼ିଶାକୁ ଆସିଛୁଁ—କଅଣ ଖାଲି ବିଦେଶରେ ତନଖା ଗଣ୍ଡାକ ପାଇଁ ? ଓଡ଼ିଶାର ଏଇ ରଜାଗୁଡ଼ାକ ଆମର କଣ୍ଟା । ଏମାନେ ପ୍ରଜାଙ୍କ ଧନ ଚଣ୍ଡି ଚପି ଖାଉଛନ୍ତି । ଆମେ ଯେ ରଜାର ରଜା । ଆମର ବଖରା ଆମେ କାଢ଼ି ନବାରେ ଦୋଷ କଅଣ ?

ପାରିଷଦ ବାଦସାହା ଜାହାଙ୍ଗୀର କଥାଟାକୁ ପସନ୍ଦ କରିଛନ୍ତି । କେଶୋଦାସଙ୍କୁ ତ ଖୁବ୍ ଖାତିର କରି ଦରବାରରୁ ଖେତାବ୍ ବି ଦିଆଇଛନ୍ତି ।

ସୁବାଦାର—ମିଳିବ ନାହିଁ ? ଏଇ ଯେ ଗୁଳାଣ ଜଣ ଘୋଡ଼ସବାର ନେଇ କେଶୋଦାସ ଖୋରଧା ରଜାର ପାଇକମାନଙ୍କ ମୁକାବିଲା କରି ବଡ଼ ବଡ଼ ଛଅଟି ହାତୀ ଆଉ ଆପଣା ଔରତକୁ ନେଇ ପୁଣି ଗ୍ଳଲି ଆସିଲେ—ସେ କଅଣ କମ୍ କଥା !

କେଶୋଦାସ—କିନ୍ତୁ ତା'ପରେ ଆପଣ ସାହାଯ୍ୟ ନ ପଠାଇଥିଲେ ବଡ଼ ଅସୁବିଧା ହୋଇଥାନ୍ତା କାଶୀମ ସାହେବ ! ଆପଣଙ୍କ ପରି ଯୋଗ୍ୟ ସୁବେଦାର ନ ଥିଲେ ଏଭଳି ଆଗପଛ ବିଚାର କେହି କାମ କରିପାରି ନ ଥାନ୍ତେ ।

ସୁବେଦାର—(ହସି) ଆରେ ଆପଣ ଯେ ଆମର ଦୋସ୍ତ । ଆମେ ଆପଣଙ୍କୁ ସାହାଯ୍ୟ ନଦେବୁ ତ ଦେବୁ କାହାକୁ ? ବାଦସାହା ତ ଖୁବ୍ ଖୁସି ।

ପରିଷଦ—ଏ ଖୁସି ଦିନରେ ସମସ୍ତେ ତ ଖୁସିହେବା ଦର୍କାର ସୁବେଦାର ସାହେବ ! କେଶୋଦାସଜୀଙ୍କ ଖୁସି ମନାଇବା ପାଇଁ ଆୟୋଜନ ହୋଇଛି ।

ସୁବେଦାର—ତେବେ ଆଉ ଡେରି କାହିଁକି ?

ପାରିଷଦ—କୋଇ ହ୍ୟାୟ !

ଭୃତ୍ୟ—ହୁଜୁର ! (ପ୍ରବେଶ ଅଭିବାଦନ କଲା—ପାରିଷଦ ଉଠିଯାଇ ତା କାନରେ କଣ କହିଲେ)

ଭୃତ୍ୟ ଯେ ହୁକୁମ୍‌!

ସୁବେଦାର—ଦେଖ, କେଶୋଦାସଜୀ—କାମ ସରିଗଲା ନାହିଁ । ସ୍ୱା ପରେ ଗୋଟି ଗୋଟି କରି ରଜାମାନଙ୍କୁ ଦେଖିବାକୁ ହେବ । ନିଶ୍ଚିନ୍ତ ହୋଇ ବସିଲେ ଚଳିବ ନାହିଁ ।

କେଶୋଦାସ—ସୁବେଦାର ସାହେବଙ୍କର ଯାହା ଇଚ୍ଛା । କେଶୋଦାସ ତୟାର ଅଛି ।

(ନର୍ତ୍ତକୀର ପ୍ରବେଶ ଓ ଅଭିବାଦନ)

ସୁବେଦାର—ବାଃ, ବାଃ—ମୈଫିଲର ଇନ୍ତଜାମ୍ ! ବେଶ୍ ବେଶ୍—ସୁରୁକର ।

ନୃତ୍ୟାରମ୍ଭ ହେଲା ଓ ନୃତ୍ୟ ଶେଷବେଳକୁ କରତାଳି ସହ ପଟକ୍ଷେପ)



## ଷଷ୍ଠ ଦୃଶ୍ୟ

(ବାରବାଟୀ ଦୁର୍ଗତୋରଣ-ବାହାର ପଥ । ଦୁର୍ଗ ଭିତରୁ ବାହାରି ଆସୁଥିଲେ ଜଣେ ରାଜ କର୍ମଚାରୀ—ବିପରୀତ ଦିଗରୁ ଜଣେ ନାଗରିକର ପ୍ରବେଶ)

ନାଗରିକ—ଆଜ୍ଞା, ପ୍ରଣାମ !

କର୍ମଚାରୀ ପ୍ରଣାମ, ପ୍ରଣାମ । କିଓ ରତନ । ବହୁତ ଦିନୁ ଦେଖା ନଥିଲା ? ଆଉ ସବୁ ଖବର କଅଣ ? ଭଲ ତ ।

ରତନ—ଆଜ୍ଞା, ସଦାକାଳେ ତ ଦୁଃଖୀ ଲୋକ ! ଖଟିଲେ ଖାଇବା । ଯୋଉଥା ବଳଦ ମିଠି ହେଲା ଆମ ଗନ୍ତାଘର । ଯାଇଥିଲି ଓଡ଼ିଶା ତ ନାଡ଼ା—ବେପାର ବଣିଜରେ । ରୂଳା କିଛି ବଦଳେଇ ଆଣିଲି ।

କର୍ମଗୃଷ୍ଟ—ଆଉ ଖୋରଧା ଖବର ଅନ୍ତର ସବୁ କଅଣ ?

ରତନ—ସେଇ ହାଣ ଗୋଳ । ଗଜପତି ମହାରାଜା ତ ବଳେଇ ଛୁଆପଣ ଆଜ୍ଞା ଏଠି କାଲ ସେଠି ହେଉଛନ୍ତି । ଯିଏ ସୁବେଦାର ଆସିଲେ ସମସ୍ତଙ୍କ ଆଖି ତ ଆଗେ ପଡ଼ୁଛି ଖୋରଧା ଗଡ଼ ଉପରେ ।

କର୍ମଗୃଷ୍ଟ—ଆଉ ଗଜପତି ମହାରାଜା ବୋଲି ମାହାତ୍ମ୍ୟଆଳୁ କାହିଁକି କହୁଚ ? ସବୁ ତ ଗଲାଣି । ମନ୍ସୁର ଖାଁ ତ ସବୁ ଶେଷ କରିଦେଲା । ପୁରୁଷୋତ୍ତମ ଦେବ ରାଜ୍ୟ ଛାଡ଼ି ପଳାଇଲେ । ଆମ ଦିଅଁ ଜଗନ୍ନାଥେ ତ ତାଙ୍କ ସାଙ୍ଗେ ସାଙ୍ଗେ ଗଲେ ।

ରତନ—ଆଜ୍ଞା । କହିବାକୁ ଡର ଲାଗୁଛି । ମହାରାଜା ପରା ମାଣିକୀ ଗଡ଼ରେ—

କର୍ମଗୃଷ୍ଟ—ଚୁପ୍ ଚୁପ୍, କିଏ କେଉଁଠି ଥିବ—କାଲେ ଶୁଣିବ ବୋଇଲେ....

ରତନ—ଆଜ୍ଞା, ଆପଣମାନେ ହେଲେ ମୋଗଲ ବାଦସାହାଙ୍କର ଦରବାରିଆ, ଗୋଟେ ଖବର ଶୁଣିଲି ଯେ ପଚାରିବାକୁ ଆସିଲି ।

କର୍ମଗୃଷ୍ଟ - କଅଣ ପଚାରୁ । ଜାଣିଥିଲେ ତମକୁ କହିବ ନାହିଁ ?

ରତନ—ଆଜ୍ଞା ! ଏଇ ଆମ ବାଲେଶ୍ୱରରେ ସବୁ ପଠାଣମାନେ ହିନ୍ଦୁ ହୋଇଯାଉଛନ୍ତି ବୋଲି ଗୋଟେ ହୁଆ ଉଠିଛି । କଅଣ ସତ କଥା ?

କର୍ମଗୃଷ୍ଟ—ହଁ, ହଁ । ରସିକା ନନ୍ଦ ଗୋସେଇଁଙ୍କ କଥା ସେ । ବାଲେଶ୍ୱର ବାଣ୍ଡହାତି ଗୋଳ ତ ଶୁଣିଥିବ । ରସିକାନନ୍ଦ ଗୋସାଇଁଙ୍କି ପରଖିବା ପାଇଁ ସୁବାଦାର ଅହମଦ୍ ବେଗ୍ କହିଲା—ତମେ ହାତୀକି ଯେବେ ହରିନାମ ଶୁଣାଇ ବସ କରିଦେବ, ତେବେ ତ ଭଲ । ନୋହିଲେ ଦଣ୍ଡ ହିଆଯିବ ।

ରତନ—ସେକଥା ତ ହୋଇଗଲା । ହାତୀ ତ ବାଟକୁ ଅଇଲା ।

କର୍ମଗୃଷ୍ଟ—ସେଇଠୁ ଏବେ ତାଙ୍କର ଅନେକ ଶିଷ୍ୟ । ପଠାଣ ମଧ୍ୟ ତାଙ୍କୁ ଗୁରୁ କଲେଣି ।

ରତନ—କଥା ତେବେ ସତ ? ତଥ୍ୟ ପାଇବା ପାଇଁ ଆପଣଙ୍କୁ ପଚାରୁଥିଲି । ଆଜ୍ଞା କଅଣ ଏଇ ହାଣ ଗୋଳ ଲୁଟ ତରାଜ ଏମିତି ଲାଗିଥିବ—ନା ଆମେ ସବୁ ଟିକିଏ ଖାଇପିଇ ସୁଖରେ ବଞ୍ଚିବା ।

କର୍ମଗୃଷ୍ଟ—ଆଉ ସେ କଥା କାହିଁକି ମନେକରୁଚ ରତନ ? ପୁଣି ତ କଅଣ ଲାଗିଲାଣି । ଆଜି ଦରବାରରେ ସବୁ କଥା ଚୁପ୍ ଚୁପ୍ ଶୁଣିଲି ।

ରତନ—କଅଣ କଅଣ, ଆଜ୍ଞା ?

କର୍ମଗୃଷ୍ଟ—ଆରେ, ତୁମେ ଆମେ ତ ଛାର । ଏବେ ବଡ଼ ବଡ଼ ଜମିଦାରଙ୍କ ମୁଣ୍ଡରେ ଚଟକ ପଡ଼ିବାକୁ ବସିଦ ହେଲାଣି । ମରହଟ୍ଟଙ୍କ ଛାଡ଼ି ଏବେ ମଗର

ଉପରେ ମାଡ଼ । ଆମେ ପର ଗୃହ୍କରଆ ନ୍ହେ । ଗୃଲ ଗୃଲ, ବାଂଟଶାଙ୍କରେ ସେ ସବୁ କହ୍ବ ଯୋଗାଏ ନାହିଁ । ଶୁଣିବ ଯେବେ ଘରେଙ୍କା ଆସ । "ଛଡ଼ କାନେ ମନ୍ତ୍ରଭେଦ" ।

**ରତନ**—ସତ ସତ ଆଜ୍ଞା ! ଗୃଲନ୍ତୁ—ଏକଥା ଶୁଣୁଶୁଣୁ ତ ଛାତିରୁ ଦାଲକାଏ ରକ୍ତ ଖସି ପଡ଼ିଲଣି ।

**କର୍ମଗୃସ୍ଥ**—ଶତ୍ରୁ ଶତ୍ରୁଙ୍କ ଛାତିରୁ ତ ମାଉଁସ ଦାଲକା ଛିଣ୍ଡି ପଡ଼ିବ ନ୍ହେ—ରକ୍ତ କଅଣ ? ହେଇ ନାହିଁ, ହେଇ ନାହିଁ କହୁ—ହେଇ ଆସୁଛୁ ସେ ବେଳ । ବାକ ଏସବୁ ବଡ଼ ଗହନ କଥା । ରୁଣ୍ଡ ଫିଟିଲେ ମୁଣ୍ଡ ଛିଣ୍ଡି ପଡ଼ିବ ମୋର ।

**ରତନ**—ନାହିଁ ଆଜ୍ଞା ! ରତନକୁ କଅଣ ଜାଣି ନାହାନ୍ତି, ଏ ଏକାଳରେ ଆପେ ଖାଇଲେ ବାପର ନାଆଁ । ସେଇଥିକ ଆଗରୁ ହୁସିଆର ହୋଇ ପଶୁରୁଚ ସିନା । ଗୃଲନ୍ତୁ ।

(ଉଭୟେ ଗୃଲଗଲେ)



## ସପ୍ତମ ଦୃଶ୍ୟ

(ବାରବାଟୀ ଦୁର୍ଗାଭ୍ୟନ୍ତର । ବାଖର ଖାଁଙ୍କ ଦରବାର—ବାଟେର୍ ପାର୍ଷଦ, ସୈନକ ଦୁଇ ଗୃରଜଣ ଓ ଶୃଙ୍ଖଳାବଦ୍ଧ ଜଣେ ଜମିଦାର ଦଣ୍ଡାୟମାନ)

**ବାଖର**—ଜାଣନ୍ତି ଜମିଦାର ସାହେବ ! ଆପଣଙ୍କ ପର ସାତ ଶହ ଜମିଦାର—କେହ୍ବ ହୁଏତ ଟିକଏ ବଡ଼ ଆଉ କଏ ବା ଶ୍ରେଷ୍ଠ—ସାତ ଶହ ଜମିଦାର ଆପଣଙ୍କ ସାଙ୍ଗରେ ବନ୍ଦୀଶାଳରେ ଥିଲେ—

**ଜମିଦାର**—ଜାଣେ ।

**ବାଖର**—ଆଜି କାହାନ୍ତି ସେମାନେ ? କହୁ କହ୍ବ ପାରିବେ ?

**ଜମିଦାର**—ସୁବେଦାର୍ ବାଖର ଖାଁ—ମୋତେ ସେ ପ୍ରଶ୍ନ କର ଲଭ କଅଣ ?

**ବାଖର**—ଲଭ ଏଇ ଯେ ଆପଣ ଆଉ ଧନ କେଉଁଠି ରଖିଛନ୍ତି ନ କହ୍ବଲେ ସେଇ-ମାନଙ୍କର ସଙ୍ଗୀ ହେବେ ।

ଜମିଦାର—ସେଇମାନଙ୍କର ସଙ୍ଗରେ ତ ମୁଁ ଥିଲି । ଯାହା ଯେଉଁଠି ଥିଲା—ସବୁ ତ କହିସାରିଛି । ସେମାନେ ମଧ୍ୟ କହିଥିଲେ । ଆଜି କେହି ନାହାନ୍ତି । ଜନ୍ମ ହେଲେ ମରଣ ଅଛି । କିଏ ଆଜି—କିଏ ବା କାଲି ମରିବ । ତା' ପାଇଁ ଚିନ୍ତା କଅଣ ? ସାତ ଶହ ଜମିଦାରଙ୍କୁ ତୁମେ ଡାକି ଆଣି ବିଶ୍ୱାସଘାତକତା କରିଚ—

ବାଖର—(ହସି) ବିଶ୍ୱାସଘାତକତା ? ଆପଣମାନେ ବିଶ୍ୱାସଘାତକ । ରାଜ୍ୟ ଆମର, ପ୍ରଜା ଆମର । ପ୍ରଜାର ଧନ ଆପଣମାନେ ଲୁଟ୍ କରିଛନ୍ତି—ଆମକୁ ଲୁଚାଇ ରଖିଛନ୍ତି । ବିଶ୍ୱାସଘାତକ ଆପଣମାନେ । କୁହନ୍ତୁ, ଆଉ ଧନ କେଉଁଠି ରଖିଛନ୍ତି । ନଚେତ୍—

ଜମିଦାର—ସୁବେଦାର ! ଯାହା ଯେଉଁଠି ଥିଲା, ମୁଁ ସବୁ କହିଦେଇଛି । ଆପଣ ବିଶ୍ୱାସ କରନ୍ତୁ, ମୋ ପାଖରେ ଆଉ କହିବାକୁ କିଛି ନାହିଁ ।

ବାଖର—ଆପଣଙ୍କ ପରିବାରଙ୍କୁ ଧରାଇଆଣି ଆପଣଙ୍କ ଆଖି ଆଗରେ ଯଦି ଟିକି ଟିକି କରି···

ଜମିଦାର—(ଚମକି) ଉଃ । ବାଖର ଖାଁ ! ସୁବେଦାର ! ତାପୂର୍ବରୁ ମୋତେ—ମୋତେ ଶୀଘ୍ର—

ବାଖର – (ହସି) ଆଚ୍ଛା, ଆଚ୍ଛା, ଜମିଦାର ସାହେବ, ଆପଣଙ୍କ ପ୍ରାର୍ଥନା ଶୁଣାଯିବ । ବେଶ୍, ଆପଣ ଜେତବ ବୁଝାନ୍ତି, ଆପଣଙ୍କ ବନ୍ଧୁ ଜମିଦାରମାନଙ୍କ ସାଙ୍ଗରେ ରହିବେ, ଏଇ ତ ? ବହୁତ ଆଚ୍ଛା ! ଜାଣନ୍ତି ସେମାନେ କେଉଁଠି ଅଛନ୍ତି ?

ଜମିଦାର—(ନୀରବ)

ବାଖର—ଜାଣନ୍ତୁ ବା ନ ଜାଣନ୍ତୁ । ସେମାନେ ସୁଖରେ ଅଛନ୍ତି । (ଉପରକୁ ହାତଠାରି ଦେଖାଇଲା) ଆପଣ ବି ଯିବେ ? ଯାଆନ୍ତୁ । (ସୈନିକମାନଙ୍କୁ ବହୁତ ଅଚ୍ଛା । ସିପାହୀ ! ଜମିଦାର ସାହେବକୋ ଅପନା ଦେସ୍ତୋଁକେ ପାଶ୍ ଭେଜ୍ ଦୋ । ଆଚ୍ଛା ଜମିଦାର ସାହେବ ··ଆଦାବ୍ ।

(ନୀରବରେ ଜମିଦାର ସୈନିକ ସହ ଗଲେ । ଅଟ୍ଟହାସ୍ୟରେ ମଞ୍ଚ ଉଚ୍ଛୁଳି ଉଠିଲା ।

●

## ଅଷ୍ଟମ ଦୃଶ୍ୟ

(ମଦ୍'ନଗୀ କୂଳ । ଦୁଇଜଣ କଟକବାସୀ—କଥାବାର୍ତ୍ତା ହୋଇ ଆସିଲେ)

୧ମ—ଆରେ ଦଅଁ ତ କାଠ-ପଥର । କଅଣ ଆଖି ଅଛୁ ନା କାନ ଅଛୁ ? ଧର୍ମ ଅନ୍ଧ ହୋଇଗଲାଣି ଏ ଅମଦାନରେ । ମୋଗଲ ପାଠଯା ଧର୍ମ ଆଖିରେ ଧୂଳି ଦେଇ ଲୋକଙ୍କ ଛେଳି ମେଣ୍ଢାପରି ହାଣକାଟ ଚଳେଇଲା । ଧର୍ମ ଥିଲେ ବୁଝନ୍ତା ନାହିଁ, ଶୁଣନ୍ତା ନାହିଁ ?

୨ୟ—ଆଜି ଏବେ ଗଡ଼ ଭିତର ଖବର ଶୁଣିଲଣି ନା ?

୧ମ—ଆଉ ଶୁଣିବା କଅଣ ? ସାତ ଶହ ଜମିଦାରଙ୍କ ଭିତରୁ ଜଣେ ଅଧେ କିଏ ବାକି ଯେବେ ଥିବେ । ଆଉ ତ ସମସ୍ତଙ୍କର ମୁଣ୍ଡକାଟ ହେଇଥିବ । କାଲି ସେଇ ପରବ ଲଗିଛୁ । ଗଙ୍ଗା ରଙ୍ଗା ହୋଇଗଲାଣି ମଣିଷ ରକ୍ତରେ । ଆଉ ଶୁଣିବା ଅଧିକ କଅଣ ?

୨ୟ—ଉହୁଁ, ସେ କଥା ନୁହଁ ହେ, ଜମିଦାରଙ୍କ ଭିତରୁ ଜଣେ କିଏ କମିତି ଖସି ଯାଇ ସାହାଜାନ ବାଦସାଙ୍କୁ ସବୁ ଖବର ଚୁପି ଦେଇଛୁ ଯେ ବାଖର ଖାଁ ଜମିଦାରମାନଙ୍କ ଠାରୁ ଗୁଳିଶ ଲକ୍ଷ ଟଙ୍କା ଆଦାୟ କରି ଖାଇଛୁ ।

୧ମ—ଆହେ, ଖାଇଲା ଭଲା—ଧନସମ୍ପତ୍ତି ଖାଇଲା । ଶେଷକୁ ଗୋଟିଏ ନୁହେଁ ଯୋଡ଼ିଏ ନୁହେଁ—ଶହ ଶହ କରି ସାତ ଶହ ମଣିଷ ମୁଣ୍ଡ ବିନାଦୋଷରେ ଖାଇଲା । ଭଲା ମୋଗଲ ଅମଳ । ଏଇଥିକି ମୁଁ କହୁଚି ଧର୍ମ ଅନ୍ଧ ହୋଇ-ଗଲାଣି । ଖାଲି ଅନ୍ଧ ବି ନୁହଁ, କାଲ, ବୋକା, ସବୁ ।

୨ୟ—ଆହେ ସେଇଆ ପରା । ମୁଁ ଶୁଣି ଆସିଲି ଯାହା—କହୁଚି । ଲୋକେ ଏଇନେ ଚୂପ୍‌ଚାପ ଭୂଟ୍‌ଭାଟ୍ ହଉଛନ୍ତି । ବାକି ଆଖିରେ ନ ଦେଖିବାଯାଏ କାହା କଥାରେ ପରତେ ଯିବା ?

୧ମ—କଅଣ ଆଉ ଅଧିକ ଶୁଣିକରି ଆସିଲ ?

୨ୟ—ବାଖର ଖାଁ ଛଡ଼ା ଖାଉଚ ।

୧ମ—କେଜାଣି ସତରେ ଜଗନ୍ନାଥେ ଚକା ଆଖି ମେଲେଇଥିବେ ? ଆମ ଓଡ଼ିଆ ଲୋକେ ଟିକିଏ ହେଲେ ନିଶ୍ୱାସ ମାରିବେ ।

୨ୟ—ହିଁ ହେ, ଜଣେ ନୂଆ ସୁବାଦାର ଆସି ପହୁଞ୍ଚିଲେଣି । ସାହାଜାନ ସବୁ କଥା ଶୁଣି ଜମିଦାରଙ୍କ ସାଥିରେ ତାଙ୍କୁ ପଠାଇଦେଇ ସାରିଲେଣି ।

୧ମ—ଏ ଖବର ତ କାହିଁ ଜଣାଶୁଣା ନାହିଁ ?

୨ୟ—ଆଜି ତ ଏ କଥା ଫିଟିଲା । ନୂଆ ସୁବାଦର ହୋଇ ମୁତକଲଜ ଖାଁ ବୋଲି କିଏ ଜଣେ ଆସିଛନ୍ତି ।

୧ମ—ସୋଉ କଲ୍ଲଜ ଅସ୍ତୁ । ସେ ମୋଗଲଙ୍କ ସାଙ୍ଗ ଗାଲକଟା ହୋଇଥିବ । ଲୁଚିବା କଥା ତ ମୂଳ । ଲଙ୍କାରୁ ସେଉଠିକି ବାହାର—ସମସ୍ତେ ଅସୁର ଆକାର । କିଏ ଉଣେଇଶ କିଏ ଅବା ବିଶ ସମସ୍ତଙ୍କି ତ ଦେଖିଲେ ମୋର ମାର ହାଣ କାଟ । ସେଇ ଧନସମ୍ପତ୍ତି ଲୁଟ ତରଜ ।

୨ୟ—ନାଇଁ, ଏ ଲୋକଟି କୁଆଡ଼େ ଭଲ ବୋଲି ଶୁଣାଯାଉଛି ।

୧ମ—ଭଲ ବୋଇଲେ ? କଅଣ ରୂପରେ ନା ଗୁଣରେ ? ମୂଳରୁ ତ ସେ ଗାଈ ମାରୁ ନାହିଁ, ଆଉ ଭଲମନ୍ଦ ଜଣାଗଲା କେମିତି ? ବାରବାଟୀ ଗଡ଼ ଭିତରେ ଗାଈ ମାରି ବଧିଲେ ଆଖି ଓଲଟି ପଡ଼େ—ଜାଣ ? ଯେତେ ହେଲେ ତ ବିଦେଶୀ ? କିଏ ସାତ, କିଏ ସତର । କିଏ ନଦୀ—କିଏ ପଥର ।

୨ୟ—ଦେଖ ତ କଅଣ ହଉଛି । ଗଡ଼ ଦୁଆରକୁ ଚାଲ—କଥାଟା ବାରିବା ।

୧ମ—ଚାଲ, ଶୁଣିଥିବା ହେଲେ କାନରେ—

(ଦୁହେଁ ଚାଲିଗଲେ)

●

## ନବମ ଦୃଶ୍ୟ

(ବାରବାଟୀ ଦୁର୍ଗାଭ୍ୟନ୍ତର । ସଜ୍ଜିତ ଦରବାର ଗୃହରେ ଉପବିଷ୍ଟ ସୁବାଦାର ମୁତକଲ୍ଲଜ ଖାଁ । ପାର୍ଶ୍ୱରେ ପାର୍ଶ୍ୱଚରଗଣ । ନାଚ ହେଉଥିଲା । ନାଚ ବନ୍ଦ ହେବା ସଙ୍ଗେ ସଙ୍ଗେ ପ୍ରବେଶ କଲେ ଜଣେ ବରିଷ୍ଠ ରାଜକର୍ମଚାରୀ, ବାଦଶାହି ଖାତରେ ସମ୍ମାନ ପ୍ରଦର୍ଶନକରି ଦଣ୍ଡାୟମାନ ହେଲେ)

କର୍ମଚାରୀ—ହଜୁରରେ କିଛି ଜଣାଇବାକୁ ଅଛି ।

ସୁବାଦାର—କହ ।

କର୍ମଚାରୀ—ଓଡ଼ିଶାରେ ବାଣିଜ୍ୟ କରିବାଲାଗି ଇଂରେଜ ବୋଲି ଗୋଟିଏ ଜାତିର କେତେକ ଲୋକ ଆସିଛନ୍ତି । ହୁକୁମ ହେଲେ ଦରବାରରେ ହାଜର କରାଇବି ।

ସୁବାଦାର—ଏ ଦେଶରେ ତ ପର୍ତ୍ତୁଗୀଜମାନେ ଆଗରୁ ବେପାର ବାଣିଜ୍ୟ ଚଳାଇ ଆସୁଛନ୍ତି । ଏମାନେ କଣ ସେଇଭଳି ଗୋଟାଏ ଜାତି ?

କର୍ମଚାରୀ—ହଜୁର ହଁ । ଏମାନେ ହଜୁରଙ୍କ ସାକ୍ଷାତ ଲାଗି ମସିଲିପଟ୍ଟମରୁ ଆସି ହରିଶପୁରଠାରେ ମହାନଦୀ ମୁହାଣରେ ପହଞ୍ଚିଲେ । ପର୍ତ୍ତୁଗୀଜମାନେ ସେଠିକି ଆସି ଏମାନଙ୍କ ଉପରେ ବଡ଼ ଜୁଲୁମ କଲେ । ହରିଶପୁର ରାଜା

ଲକ୍ଷ୍ମୀପ ଏ ବଦେଶୀମାନଙ୍କ ସାହାଯ୍ୟ ହୋଇ ନ ଥିଲେ, ପର୍ତ୍ତୁଗୀଜମାନେ ମାର ପକାଇଥାନ୍ତେ । ବହୁ କଷ୍ଟରେ ଏମାନେ କଟକ ଆସିଛନ୍ତି । ତାଙ୍କ ଦଳର ଜଣେ ମୁଖିଆ ଲୋକ ହଜୁରରେ ଦୁଃଖ ଜଣାଇବାକୁ ଚାହେଁ ।

ସୁବାଦାର—କିଏ ସେ ? କାହାନ୍ତି ?

କର୍ମଚାରୀ -ତାଙ୍କ ନାମ କାର୍ଟରାଇଟ୍ । ଗଡ଼ଦ୍ୱାରରେ ଅପେକ୍ଷା କରିଛନ୍ତି ।

ସୁବାଦାର—ଆଚ୍ଛା, ନେଇଆସ । କଅଣ ତାଙ୍କର କହିବାର ଅଛି କୁହନ୍ତୁ ।

କର୍ମଚାରୀ—ସେମାନେ ଚାହାନ୍ତି ବେପାର ପାଇଁ ହୁକୁମନାମା ଆଉ ପର୍ତ୍ତୁଗୀଜମାନଙ୍କର ଅନ୍ୟାୟ ଜୁଲମର ବିଚାର ।

ସୁବାଦାର—ଆଚ୍ଛା ଆଚ୍ଛା—ଆସନ୍ତୁ ।

କର୍ମଚାରୀ—ଯୋ ହୁକୁମ (ସମ୍ମାନ ପର ପ୍ରସ୍ଥାନ)

ଅନ୍ୟ ପାରିଷଦ—ହଜୁର, ପର୍ତ୍ତୁଗୀଜମାନେ ତ ବେଶ୍ ବାଣିଜ୍ୟ ଚଳାଇଛନ୍ତି । ଆମ ଆଇନକୁ ମାନି ଚଳୁଛନ୍ତି ମଧ୍ୟ । ବିନା କାରଣରେ ସେମାନଙ୍କ କାରବାର ବନ୍ଦକରିଦେବାଟା ଠିକ୍ ହେବ ନାହିଁ ବୋଧହୁଏ ।

ସୁବେଦାର—ଆଗେ, ଏମାନଙ୍କର କଅଣ କହିବାର ଅଛି ଶୁଣାଯାଉ । ବିଚାର ତ ତା'ପରେ ।

(ରାଜକର୍ମଚାରୀସହ କାର୍ଟରାଇଟ୍ ପ୍ରବେଶ ଓ ସେକାଳର ରାଜକାୟ ଢଙ୍ଗରେ ସୁବାଦାରଙ୍କର ପାଦୁକା ଚୁମ୍ବନ କଲେ । ପରେ ସୁବାଦାରଙ୍କର ସମ୍ମୁଖରେ ବହୁମୂଲ୍ୟ ପଦାର୍ଥପୂର୍ଣ୍ଣ ଉପଢୌକନ ବାଢ଼ିଲେ ।)

ସୁବାଦାର—ଆପଣଙ୍କର କଅଣ କହିବାର ଅଛି ?

କାର୍ଟ—ଆମ୍ଭେମାନେ ଇଂଲଣ୍ଡବାସୀ ବଣିକ । ଓଡ଼ିଶାରେ କାରବାର ଚଳାଇବା ପାଇଁ ଅନୁମତି ମାଗି ଆସିଛୁଁ । ବାଟରେ ପର୍ତ୍ତୁଗୀଜମାନେ ଆମକୁ ଆକ୍ରମଣ କଲେ । ହରିଶପୁର ରାଜା ଆମର ସହାୟ ହୋଇ ନ ଥିଲେ ଆମେ ଆଠଜଣ ବଣିକଙ୍କର ଜୀବନ ରକ୍ଷା ନ ଥାନ୍ତା । ହଜୁରରେ ଏଇ ଦୁଇଟି ନିବେଦନ ।

(ଘଣ୍ଟାବାଦନ)

ସୁବାଦାର—ଅଚ୍ଛା, ଆପଣଙ୍କର ଅଭିଯୋଗ ଆଉ ପ୍ରାର୍ଥନା ବିଚାର କରାଯିବ । କାଲି ଆପଣ ଦରବାରରେ ହାଜର ହୁଅନ୍ତୁ ।

(ଆସନ ତ୍ୟାଗକଲେ—ଦୂରରୁ "ଆଲ୍ଲା ହୋ ଆକବର" ଶବ୍ଦ ହେଲା)

ପାରିଷଦ—ଆଜି ନମାଜ ଓକ୍ତ ହୋଇଯାଇଛି । ସମୟ ନାହିଁ ।

(ଘଣ୍ଟା ଶୃଙ୍ଖଳ—ସମସ୍ତେ ଆସନ ତ୍ୟାଗ କଲେ)



## ଚତୁର୍ଥ ଅଙ୍କ

### ପ୍ରଥମ ଦୃଶ୍ୟ

(ବାରବାଟୀ ଦୁର୍ଗାଭ୍ୟନ୍ତର—ଆଲୋକବର୍ଜିତ ଏକ ଗୃହରେ ବନ୍ଦୀହୋଇ ରହିଥିଲେ ଭରତ ପଟ୍ଟନାୟକ ଓ ଖୋରଧାର ରାଜା ମୁକୁନ୍ଦ ଦେବ)

ଭରତ—ମହାରାଜ !

ମୁକୁନ୍ଦ—ଭରତ ପଟ୍ଟନାୟକେ ! ମହାରାଜା ବୋଲି କାହୁଁ ଶୁଖିଲା ପୋଡ଼ା ଘାଆରେ ଚୂନ ଛିଟିକା ଦେଉଛ କାହିଁକି ? ମହାରାଜା ନୁହଁ କିମ୍ବା ମୁକୁନ୍ଦ ଦେବ ନୁହଁ—ବନ୍ଦୀ ମୁକୁନ୍ଦ ବୋଲି ଡାକ ମୋର ଅବସ୍ଥାକୁ ଅନାଇଁ । ସେଇ ହେବ ମୋର ଉପଯୁକ୍ତ ସମ୍ବୋଧନ ।

ଭରତ—ମହାରାଜ ! କାଇଞ୍ଚ ସାତତାଳ ପଙ୍କ ଭିତରେ ଥିଲେ ମଧ୍ୟ ତା'ର ଜ୍ୟୋତି ହରାଏ ନାହିଁ ।

ମୁକୁନ୍ଦ—ଆଉ କାହିଁକି ? କ୍ଷୁଧା, ନିଦ୍ରା ସବୁ ପାସୋର ଦେଇ ଅପେକ୍ଷା କରିଛୁ ସେଇ ମରଣ କୋଳର ବିଶ୍ରାମକୁ । ମନେପଡ଼ୁଛୁ ଏଇ ବାରବାଟୀ । ଆମର ପୂର୍ବପୁରୁଷଙ୍କ କୀର୍ତ୍ତି । ଏଇଠି ଶୁଭୁଥିଲା ଘନ ଧୂପ ପାଞ୍ଚ ଅବକାଶରେ ଦେବ ମନ୍ଦିରର ଘଣ୍ଟି ଘଣ୍ଟା ମର୍ଦ୍ଦଳ—ଜୟ ଜଗନ୍ନାଥ ନାଦରେ ମହାନଦୀ ବକ୍ଷରେ ତରଙ୍ଗ ଖେଳୁଥିଲା । ଗିରି ଗୁହା ପ୍ରତିଧ୍ୱନିତ ହେଉଥିଲା ଯେଉଁ ଡାକରେ ସେଇଠି—

ନେପଥ୍ୟେ—"ଆଲ୍ଲା ହୋ ଆକବର" ।

ଭରତ—ଏଇ ଈଶ୍ୱର ନାମରେ ଛଦ୍ମାବରଣ ତଳେ ଯାଇଥା ସଜଡ଼ା ହୋଇ ରହିଛୁ, ଅନ୍ୟାୟ ଆତ୍ୟାଚାର, ଲୁଣ୍ଠନ, ଧର୍ଷଣ, ତଥାପି ଈଶ୍ୱର ନୀରବ—ନିର୍ବେଦ । ଏତେ ଦୁର୍ମତି ପରେ ମଧ୍ୟ ଜଗନ୍ନାଥ ଅନ୍ଧ, ବଧୀର, ମୂକ ହୋଇ ବସି ରହିଛନ୍ତି ?

ମୁକୁନ୍ଦ—ଖାଲି ସେତିକି ତ ନୁହେଁ—ବନ୍ଦୀ ଭାବରେ ମୟୂରଭଞ୍ଜ ରାଜା କୃଷ୍ଣଚନ୍ଦ୍ରଙ୍କୁ ଡାକଆଣି ଯେପରି ହତ୍ୟା କରାଗଲା—ସେତେ ବଡ଼ ବିଶ୍ୱାସଘାତକତା ପୁଣି ତ ଏଇ ମାଟି ସହିଛୁ ? ଏଇ ଦୃଶ୍ୟ ଦେଖିଛନ୍ତି—ସହିଛନ୍ତି ।

ଭରତ—ସତ୍ତ୍ୱର ମୂଳରେ ଆମର ଶୋଚନୀୟ ମାତ୍ର ଭ୍ରାନ୍ତ ଘଟାଇଛୁ । ଅମ୍ଭେମାନେ ଏକାଠି ହୋଇପାରିଥିଲେ ମୋଗଲ ଦିଲ୍ଲୀରୁ ଆସି ଆମ ଘରର ପଣି ଆମ ପିଠିରେ ବାଧା ମାରି ନ ଥାନ୍ତେ । ଏବେ ମୁଁ ଭାବିପାରୁ ନାହିଁ, ଆତ୍ମସମର୍ପଣ କରି ଆମେ ଠିକ୍ କରିଛୁ କି ଭୁଲ କରିଛୁ ?

ମୁକୁନ୍ଦ—ତାର ତ ପୁରସ୍କାର ଆମେ ହାତେ ହାତେ ପାଉଛେ—ଏଇ ବନ୍ଦୀଘରେ । ବୁଝିପାରୁ ନାହିଁ କି ଅପରାଧରେ ମୋର ଏ ଶାସ୍ତି ?

ଭରତ—ଆଉ କିଛି ନୁହେଁ—କେବଳ ତୁମ୍ଭଙ୍କୁ ଜଗନ୍ନାଥଙ୍କ ଚଳନ୍ତି ପ୍ରତିମା ବୋଲି ଯାହା ଲୋକେ ମାନନ୍ତି, ଭକ୍ତି କରନ୍ତି—ସେହିତକ ଖାନ୍-ଇ ଦୌରାନ ସହିପାରିଲା ନାହିଁ । ତୁମ୍ଭଙ୍କୁ ଶାସନ କରିପାରିଲେ ତା'ର ଦେଶ ବିଜୟ କାମନା ସୁବିଧା ହୋଇଯିବ ଭାବି, ଦୁର୍ଗଯାକ ଆକ୍ରମଣ କରି ଭାଙ୍ଗି ଚୂରମାର କରିଛି ।

ମୁକୁନ୍ଦ—ଆଉ ତ ବାହାର ଖବର ଦୂରେ ଥାଉ—ବାହାରର ପବନ ଏଠି ଲାଗୁ ନାହିଁ । ଖାନ୍-ଇ-ଦୌରାନର କି ଇଚ୍ଛା ? ଯେବେ ଆମକୁ ହତ୍ୟା କରିବାର କଥା ତେବେ ବିଳମ୍ବ କାହିଁକି ? ନିତି ଏ ଜୀବନ ମରଣ ଅପେକ୍ଷା, ପ୍ରକୃତ ମୃତ୍ୟୁ ବଡ଼ ସୁଖକର ନୁହେଁ କି ?

ଭରତ—ସେ ନିଜେ ଏଠାରେ ଅଛି କି ନାହିଁ କେଜାଣି ? ଗଡ଼ଜାତମୁଣ୍ଡିଙ୍କ ଉପରେ ଅତ୍ୟାଚାରକରି ଲୁଣ୍ଠନ କରିବା ତ ତାର ଅଭିପ୍ରାୟ । ଆଉ ବାଧା ଦେବାକୁ କେହି ନାହିଁ ।

(ନେପଥ୍ୟରୁ ତୂର୍ଯ୍ୟନାଦ ଶୁଭିଲା)

ମୁକୁନ୍ଦ—ଏ କଅଣ ? ଖାନ୍-ଇ-ଦୌରାନ ଆସୁଛି ବୋଧହୁଏ ?

ଭରତ—ଜଗନ୍ନାଥେ ଏତେଦିନେ ପୁହାଣ ଶୁଣୁଛନ୍ତି ମଣିମା ! ଆଜି ଆମର ଦୁଃଖ ଜୀବନର ଶେଷ ହେବ । ନିତି ନିତି ଏ ବନ୍ଦୀଶାଳାରେ ଜଳିପୋଡ଼ି ମରିବା-ଠାରୁ ଖାନ-ଇ-ଦୌରାନ୍ ହାତରେ ଏକାଥରକେ ମରିବାପାଇଁ ମୁଁ ପ୍ରଭୁଙ୍କୁ କେତେ ପ୍ରାର୍ଥନା କରିଛି । ପ୍ରଭୁ । ଦୟାମୟ ! (ହାତ ଯୋଡ଼ିଲେ)

ମୁକୁନ୍ଦ—ପଟ୍ଟନାୟକେ ! ମୁଁ ତ ସେହି ମୁହୂର୍ତ୍ତକୁ ଅନାଇଁ ବସିଛି । ଜଗନ୍ନାଥ ସେ ସୁଦିନ ଦେଇ ନାହାନ୍ତି ଯେ !

(ବନ୍ଦଶାଳା ଫିଟିବା ଶବ୍ଦ)

ଭରତ—ଜଗନ୍ନାଥ ! ଜଗନ୍ନାଥ ! ଜଗନ୍ନାଥ !

(ଖାନ୍-ଇ-ଦୌରାନ୍ ପ୍ରବେଶ କଲେ)

ଖାନ୍—ଆଦାବ୍ ରାଜାସାହେବ ! ଆମର କାମ ଶେଷ ହୋଇଛି । ଆପଣ ଆଜି ଭରତ ପଟ୍ଟନାୟକ ତୁହେଁ ମୁକ୍ତ । ଯାଇ ଆପଣା ରାଜ୍ୟରେ ଖୁସିରେ ରାଜପଣ କରନ୍ତୁ ।

ମୁକୁନ୍ଦ—ଏ ଷଡ଼ଯନ୍ତ୍ର ବନ୍ଦୀ ସହିତ ଆଉ କାହିଁକି ସୁବେଦାର ଦୌରାନ୍ ?

ଖାନ୍—ମୋତେ ବିଶ୍ୱାସ କର ରଜା ମୁକୁନ୍ଦଦେବ !

ମୁକୁନ୍ଦ—(ହସି) ବିଶ୍ୱାସ ? କେଉଁ ବିଶ୍ୱାସରେ ବିଶ୍ୱାସ କରିବ ?

ଖାନ୍—(ହସି) କୋଇ ହାସ୍ତ ?

(ସିପାହୀର ପ୍ରବେଶ)

ଖାନ୍—ଦରବାରୀ ତାମ୍‌ଜାନ୍‌ମେ ଇଜ୍ଜତ୍‌କେ ସାଥ୍ ରାଜାସାହେବକୋ ଖୁର୍ଦ୍ଧା-ଗଡ଼ତକ ଲେ ଯାଓ । ଆଇୟେ ରାଜାସାହେବ । ଆଇୟେ—

(ପଥ ପ୍ରଦର୍ଶକ ହେଲେ)

●

## ଦ୍ୱିତୀୟ ଦୃଶ୍ୟ

(ରାଜପଥ । ଦୁଇ ତିନିଜଣ ଲୋକ କଥାବାର୍ତ୍ତା ହୋଇ ଆସୁଥିଲେ)

୧ମ—ଆଉ ସେମୁରା କହି ଲାଭ କଅଣ ? ଆମର ଗାଆଁ କଥା ଏବେ ଦେଖ । ଏହି ସାତଦିନ ଭିତରେ ସୁରଜଣ ଲୋକ ତା' ପଛକୁ ତା, ପଛକୁ ଖଜଣା ଅସୁଲ କରିବାକୁ ଆସିଲେଣି । ଜଣେ କହୁଛି ମୁଁ ନେବି । ଜଣେ କହୁଚି ମୋତେ ବି ପରୱାନା ମିଳିଛି । ଏବେ ମଣିଷ କାହାକୁ ଦବ ?

୨ୟ—ସ୍ତା କେମିତି ହେଲା ?

୧ମ—କାହିଁକି ? ପୁଲାଏ ପୁଲାଏ ଅଣ୍ଡାଗୁଣ୍ଡା, ଢଭଙ୍କ ପାଖରୁ ପଢ଼ିଯାଇଛି ହାକିମଙ୍କ ପେଟରେ ।

୩ୟ—ସେଥିରେ ପୁଣି ଖଜଣା କାହାର କେତେ, କିଏ କେତେ ଦବ ତାର ବାପ ମାଆ କିଛି ଭଲ ଅଛି ? ସେ କଥା ପଚାରିଲେ ଜମିଦାର କହୁଥିବା ନାହାନ୍ତି କ ଚୌଧୁରୀଙ୍କ ଜଣା ନାହିଁ । ଶୁଣାକୁ ତିନିଗୁଣାରେ ମାଡ଼ ମାର, ଅଦୌତ-କର ଖଜଣା ଡମ୍ଫି କରା ହଉଚି ।

୧ମ—ଏଇଥିରେ କହୁଚ ଯେ—କେମିତି ଗୃଳ ବାଛି ଲୋକ ଏ ରାଜ୍ୟରେ ରହିବ ?
ଏ ଆଉ ସେ ଓଡ଼ିଶା ମୁଲକ ହୋଇ ନାହିଁ ।

୨ୟ—ଆଉ କୋଉଠିକି ଭଲା ପଳେଇବା ? ତାର କିଛି ଠିକଣା ଠାବର ଅଛି ?
ଦୌରାନ୍ ଉପରେ ତ ସଭିଏଁ ଗୃହନ୍ତି । ପାଖପାଖ ରାଜ୍ୟ ଡମପଡ଼ା, ମଲପଡ଼ା, ରଣପୁର ହାରଙ୍ଗଗଡ଼; ସବୁ ରାଜ୍ୟ ରଜା ଜମିଦାରଙ୍କ କାନ୍‌ମୁଣ୍ଡା ଅଇଁଷି କଉନ ହୋଇ ରହିଲେଣି ।

୩ୟ—କାହିଁକି ? ଏ ପଟକୁ ଦେଖୁନା—ଦଶଆଠାପୁ ଖଜା ଦ୍ୱୀପରେ ପରା କନକା ରଜା ଲୁଚିଥିଲେ । କୁଜଙ୍ଗ ରଜା ନେପାଳୀ ଅହନ୍ୟା ସାଧିବାକୁ ଦୌରାନକୁ ସାହାଯ୍ୟ ଦେଇ ତାଙ୍କୁ ଧରାଇଦେଲା । ଯମ ଆସି ଦାଣ୍ଡ କବାଟରେ ଟିପ ମାରିଲାଣି । ଏତେବେଳେ ବ ମ୍ୟାଙ୍କର ଖାଇ ଖାଇ ଭୂଆଁ ବଳେଇ ଖୁଆ ଖୋଇ ଲାଗିଛି ।

୧ମ—ସେଇଆ ହେ ! ବଗୃରୁ ନାହାନ୍ତ ଏଇତକ୍—କିରେ ଆଜ ସେ ଗଲା, କାଲି ତ ଅମ ଉପରେ ଏଇ ରାଧା ଚଡ଼କ ପଡ଼ିବ । ସେତେବେଳକୁ କଏ ମାମୁଁ ଆସି ପିଠିରେ ପଡ଼ିବ !

୨ୟ—ଆଉ ମାମୁଁ ନା ଅଜା ? ଦକ୍ଷିଣରେ ସେମେତ କୋଦାଳ ଆଠଗଡ଼—ହରତନ୍ତ୍ର, ଖଲ୍ଲିକୋଟ ଟେକ୍କଟରାସ୍ତ—ଯେ ଯୋଉଠି ଥିଲେ ସଭିଏଁ ହାତଯୋଡ଼ି ଆଜ୍ଞା ଆଜ୍ଞା କଲେଣି । ଖଜଣା ଗଣିଲେଣି । ମୟୂରଭଞ୍ଜକୁ ତ ଧୋକା ଦେଇ ମାଇଲା । କେନ୍ଦୁଝର ତ ଟଲମଲ । ମରୁ ସରିଲାଣି ମ । ସେ ଓଡ଼ିଶା ହୋଇ ଆଉ ନାହିଁ ।

୩ୟ—ଏ ତ ଗଲା ପେଟ ପିଠି କଥା । ଆଉ ଧର୍ମ କର୍ମ ତ ସବୁ ବୁଡ଼ିଲା । ଶୁଣିଚୁ ନା ଖବର ? (ଗୃରିଆଡ଼କୁ ଗୃହିଁଲା ଉପରେ)

୧ମ—କଅଣ ?

୩ୟ—ଆରେ କେହି କେଉଁଠି ନାହିଁ ତ ? ମୁଁ ଗୋଟିଏ ଭିତର ଖବର ବାଉଛି । ବାଦସା ଆଉରଙ୍ଗଜେବ ବଇଚ ରାଜ୍ୟ ତମାମ ଦେଉଳି ମୋଗଲ ପଠାଣ କଲଦବାକୁ ।

୨ୟ—ସତେ ? କଅଣ ଜବର୍ଦସ୍ତ ଜରଦେବ ?

୩ୟ—ନୁହଁ ତ ଆଉ କଅଣ ? ରାଜ୍ୟ ତାର—ମୁଲକ ତା'ର, ବଳ ତାର । ଯାହା ବଗୃରବ ତା ଇଚ୍ଛା । କଏ ଏବେ ତାକୁ ମନା କରୁଛ ? ନ୍ୟାୟ ଉଠିଗଲା । କେମେତେ ତାଙ୍କ ଧର୍ମ ମନ୍ତ୍ରେ ଆଦରବେ ଦେଇଥିପାଇଁ ଜଣେ ଜଣେ ମୋଗଲ ପ୍ରଗୃରରେ ଲଗିଛନ୍ତି । ଏ ପରା କାଳ ବନ୍ଧୁର ଯୁଗ ହେଇଚାଲେ ଭାଇ !

୧ମ—ମୁଁ ଗୋଟିଏ ଖବର ପାଇଛି ଯେ, ପଥରବନ୍ଦ କନ୍ଦରା ପାଖରୁ ଆମ ପିଲାଏ ଧୂଅ ଆସି କହୁଥିଲେ, ସେଠି ପୁରୁଣା ଜଗନ୍ନାଥ ଦେଉଳଟାକୁ ଭାଙ୍ଗି ଦେଇ ତା ଜାଗାରେ ଗୋଟିଏ ମସ୍‌ଜିଦ ତୋଳା ହେଉଛି ।

୨ୟ—ଓହୋ ଧର୍ମ, ତୁ ଥିଲେ ବୁଝିବୁ ।

୧ମ—ଆଉ ଧର୍ମ ଧର୍ମ । ଧର୍ମ ଅନ୍ଧ ହେଲାଣି ମ । ଏ ସିନା ଠାଆକ କଥା ଶୁଣି ଧର୍ମକୁ ଡାକ ଦେଉଛୁ—ଏମିତି କେତେ କୁଆଡ଼େ ହଉଚ ତା'ର ଠିକଣା ନାହିଁ । ନୂଆ ଦେଉଳ କେହି ତୋଳାଇ ପାରିବେ ନାହିଁ—ମନା ପୁରୁଣା ଭଅଁ, ଦେଉଳ, ଗାଦଘର କାହାର ମରାମତି କାମ ହୋଇପାରିବ ନାହିଁ—ସେଥିକି ମନା ।

୩ୟ—ଏତେ ବାଟ କାହିଁକି ଯାଉଚ ? ଆମର ଏଇ ଭଗତ ହରିଦାସଙ୍କ କଥାରୁ ଦେଖୁନା । ସଦାନନ୍ଦ କବିସୂର୍ଯ୍ୟ ତାଙ୍କ "ନାମ ଚିନ୍ତାମଣି"ରେ ଲେଖିଥୋଇ ଦେଇ ଯାଉଛନ୍ତି ପରା—

'ହରିଦାସଙ୍କୁ ବାଦଶା ଚହିଲା,
ହରି ନ ବୋଲ କଲମା ଭଣରେ ।"

୨ୟ—ହଁ ହୋ, ଏମିତି କେତେ ରଜା, କେତେ ବାଦସା, କେତେ ସୁବେଦାର ଯିବେ ଆସିବେ, ମରିବେ—ହଜିବେ । ବାକି କବି ମର ବି ଜୀଇ ରହିଥିବ । ପଦ କୁଆଡ଼େ ଯିବ ? ଆମର ପିଲାଏ ଧନେ ପଢ଼ିବେ ଶୁଣିବେ । ଜାଣିବେ ତ ହେଲେ ସବୁକଥା କବିଙ୍କ ଲେଖାରୁ । (ନେପଥ୍ୟେ ନାଗରା ଶବ୍ଦ)

୧ମ—(୨ୟ କଥାରେ ବାଧା ଦେଇ) ଆରେ ଏ ପୁଣି କଅଣ ଧେଣ୍ଡୁରା ବାଜୁଆ ହେଲାଣି ? କୋଉ କଥା କେଜାଣି ?

୩ୟ—ଜିଜିଆ କର ଚଳିବ ବୋଲି କହୁଥିଲେ ସେଇ କଥା ହୋଇଥିବ । ଆକବର ତାକୁ ଉଠେଇ ଦେଇଥିଲେ ସିନା, ଆଉରଙ୍ଗଜେବ ପୁଣି ତାକୁ ବସାଇବ ବୋଲି ଚୁପ୍‌ଚାପ୍ ଶୁଣା ଯାଉଥିଲା ।

୨ୟ—ଚାଲ ଚାଲ, ଟିକଏ ବାର ଆସିବା ହେଲେ । ଧେଣ୍ଡୁରା ଆର ପାଖରେ ଶୁଭୁଛି କି କ'ଣ ?

୧ମ—ଚାଲ, ଜିଜିଆ ହେଲେ ଦବାକୁ ହେବ—ଫିଜିଆ ହେଲେ ଦବାକୁ ହବ । ଧର୍ମ ତ ଛାଡ଼ି ନାହେଁ—ରାଇଜ ତ ଛାଡ଼ି ନାହେଁ । ଯାହା ଭାଗ୍ୟରେ ଥିବ ।

ଗାୟକ—(ଯାଉ ଯାଉ) ରାଉତ ଚୁଡ଼ାମଣି କଥା କହୁଛ ସେ, କୋଉ ତଳକୁ ଯିବା ? ସବୁଠି ତ ଏଇ କଥା କହୁଛନ୍ତି ଭାଇ, ଦେଖ କଅଣ ହଉଛି । ଜଗନ୍ନାଥଙ୍କ ଇଚ୍ଛା । ବୁଝିଲେ ଭାଇ !

"ଯାହା କରିବେ ସାଇଁ
ତା' କାହାର ହାତରେ ନାହିଁ ।"

(ନାଗରା ଶୁଭୁଥାଏ—ସମସ୍ତେ ସେଇ ଆଡ଼କୁ ଚାଲିଗଲେ)



## ତୃତୀୟ ଦୃଶ୍ୟ

(ବାରବାଟୀ ଦୁର୍ଗାଭ୍ୟନ୍ତର । ଚାରିଜଣ ସମ୍ଭ୍ରମର ରାଜକର୍ମଚାରୀ ଗୋଟିଏ ଦଳ ବାନ୍ଧି କଥାବାର୍ତ୍ତା ହେଉଥିଲେ । ସେଥିରୁ ଦୁଇଜଣ ହିନ୍ଦୁ ଓ ଦୁଇଜଣ ମୁସଲମାନ ।)

ରଘୁ—ବୁଝିଲୁ ଭାଇ ରହିମ୍, କେତେ ସୁବେଦାର ଆମ ସମୟରେ ଦେଖିଲୁଣି । ହେଲେ ଏଇ ନାଇବ ନାଜିମ ମୁଜାଉଦ୍ଦିନଙ୍କ ଅମଳ ଏକା ରାଜା ଥିଲାପରି ଲାଗିଲା ।

ରହିମ୍—ତାଙ୍କ କଥା କାହିଁକି ପଚାରୁଛ ରଘୁ ! ଏ ଜାଣନ୍ତି ହିନ୍ଦୁ ମୁସଲମାନ ଏକ, ଯେମିତି ଦୁଇ ଭାଇ । ଏକା ଗଛରେ ଯୋଡ଼ାଏ ଫୁଲ ।

ଦାମ—ମଲ୍ଲ ସେ ତ ଆଖି ଆଗରେ ଦେଖାଇ ଦେଖା । ରାଜା ଗୁଣେ ରାଜ୍ୟ । ଏତେ ତ ଥିଲେ—କେହି ଭଲ ଏ କଥା କରାଇ ପାରିଥିଲେ ? କଦମ ରସୁଲ ମସଜିଦ୍ ତୋଳିଲେ ସୁଜାଉଦ୍ଦିନ । ଏମିତି ଖଞ୍ଜରେ ତାକୁ ବରାଦ କରିଛନ୍ତି ଯେ ହିନ୍ଦୁ ମୁସଲମାନ ସହେଁ ଯାଉଛନ୍ତି ଦର୍ଶନକୁ ଆପଣା ଆପଣା ଠାଅଁ ବୋଲି ଭାବି ।

କରିମ—ସେତିକି ଖାଲି ତ ନୁହେଁ । ଏଇ ଆଜି ସୋଉ ବରାଦ ହୋଇଛି ସତ୍ୟନାରାୟଣ ପାଲା । ସେ ତ ତମ ହିନ୍ଦୁର ଯେମିତି, ଆମ ମୁସଲମାନର ସେମିତି ଠାକୁର । ପୀର ପାଇଗମ୍ବର ବୋଇଲେ ହିନ୍ଦୁ ଶିରଣୀ ଦଉଛି । ମୁସଲମାନ ବି ଶିରଣୀ ମାନୁଛି ।

(ଅନ୍ୟ ଜଣେ ଦରବାରୀ ଲୋକ ପ୍ରବେଶ)

ଦରବାରୀ—କାରେ ଦଶ ବାରଣା ପାଇଁ ଘଣ୍ଟାଏ ମଠକଲ । ପୂଜାବାଲାମାନେ ଆସି ପହଞ୍ଚ ଗଲେଣି ଯେ । ନାଜମ ସାହେବ ହୁକୁମ ଦେଇଛନ୍ତି—କାଲାଦ୍ୱାର ବରାବର ଖୋଲା ରହିବ । କି ହିନ୍ଦୁ କି ମୁସଲମାନ ସମସ୍ତେ ଆସି ସତ୍ୟନାରାୟଣ ପାଲା ଦେଖିପାରବେ । ପାଲା ସୁରୁ ହେଲାଣି କି ନାଇଁ ମୋତେ ଦେଖିବା ପାଇଁ ପଠାହୋଇଛୁ । ସାର, ସାର—ବେଗେ କାମ ସାର ମୁକାମ ଆପଣାକୁ ଜାଗା ଠିକକର ରଖ । (ପୂଜାବାଲା ଆସିଲେ) ଏଇ ତ ପୂଜାବାଲାମାନେ ଆସିଗଲେଣି ।

ପୂଜାବାଲା—ହୁକୁମ ହେଇଥିଲା ବେଗେ ଆସିବାକୁ । ଆମେ ଆଉ ମଠ କରନ୍ତୁ କେମିତ ?

ଦରବାରୀ—ବାସ୍, ବାସ୍, ତମର ମୁକାମ ଠିକ କର ପାଲା ଆରମ୍ଭ ହେଉ । ମୁଁ ଖବର କରୁଛୁ । (ଚାଲିଗଲା)

ରଘୁ—ଆରେ ବସମ ! ଅନୁକୂଳରୁ ଟିକିଏ ଦେଖିବା । କାମ ଆଉ କେଅଣ ଅଛୁକି ?

ରହିମ—ହଁ, ଆମ କାମ ତ ହମଡ଼ି ଯାଇଛୁ । ଦଅ ବସ ।

(ପୂଜାବାଲା ମୁକାମ ସଜାଡ଼ିଲେ)

କରିମ—ଦଅ ଭାଇ, ଟିକିଏ ଝଅଟ ଝଅଟ ଆରମ୍ଭ କର । ଲୋକେ ଭିଡ଼ ହୋଇଗଲେ ଫେର ଆମକୁ ହଟି ଯିବାକୁ ପଡ଼ିବ । ତମ ଝାଞ୍ଜ, ଖୋଳ ବାଜିଲେ ତ ମଣିଷ ଗଦା ହୋଇଯିବେ ମନକୁ ।

ପୂଜାବାଲା—ଆମର ତ କାମ ସେଇଆ ଭାଇ । ହେଇ ସରିଲା ତ । ବସ !

(ପୂଜା ଆରମ୍ଭ କଲେ)

ଶ୍ରୀ ସତ୍ୟନାରାୟଣ ଦେବ ପ୍ରୀତ୍ୟର୍ଥେ--

ଆନନ୍ଦେ ଏକବାର ହରିବୋଲ ।

(ସମସ୍ତେ ହରିବୋଲ ଦେଲେ)

ଦାମ—କୋଉ ପାଲା ଅଜି କରିବ ଯେ ?

ପୂଜାବାଲା—ହାକିମ ଆସନ୍ତୁ । ଯାହା ବରାଦ କରିବେ ।

କରିମ—ଓ, ନାଜମ ସାହେବ ଆସିଲେ ତେବେ ଆରମ୍ଭ ହେବ ।

ପୂଜାବାଲା—ହଁ, ତା ଆଗରୁ ଆମ ବନ୍ଦନାଟିକ ସାର ଦେଇଥିବୁ ।

କରିମ—ହଉ ହଉ, ଆମେ ସେତିକି ଭଲା ଶୁଣିଥାଉ । କେଜାଣି ପଛକୁ କୋଉ କାମରେ ବରାଦ ହେଲେ—ଆଉ ଆମେ ଜଣେ ନା ପାଲା ଜଣେ ? ଦଅ ଗାଆ ଗାଆ ।

ପୂଜାରୀ—(ଗୀତ ଆରମ୍ଭ କଲେ)

ଜୟ ଜୟ ଦୀନବନ୍ଧୁ ନବଜଳ ଧର
ଅନାଦ୍ୟ ଭଞ୍ଜନ ହର ଜୟ ଗଙ୍ଗାଧର ।୧।

ରାମ ଅବତାରେ—ରାବଣ ବଧିଲ
ନାଶିଲ ପୃଥ୍ୱୀରେ ପାପର ଭାର ।
ତୁମେ ହର ତୁମେ ଧୀର ପୀତାମ୍ବର
ନାନା ରୂପେ ନାନା ନାମକୁ ଧର !
କରୁଣାକର
କମଳାବର
ଏ ଭବ ସାଗରୁ ଉଦ୍ଧର ଧର ।୨।



## ଚତୁର୍ଥ ଦୃଶ୍ୟ

(ଶିବ ମନ୍ଦିର—ସମ୍ମୁଖରେ ପୂଜକ ପୂଜାରେ ବସିଛନ୍ତି । ଆଉ ଜଣେ ଲୋକ କିଛି ଫୁଲ ଆଣି ଥୋଇଦେଇ ଦେବତାଙ୍କୁ ପ୍ରଣାମ କଲେ)

ପୂଜକ – କଅଣ, ଫୁଲ ଆଣିଛ ?

ଆଗନ୍ତୁକ—ଆଜ୍ଞା ହଁ, ଯେତେଦିନ ପର୍ଯ୍ୟନ୍ତ ଧର୍ମରେ ଅଛେଁ, ଯାହା ପାରୁଚେ ତାହା କରୁଥିବା । ମହାପୁରୁ ଯେଉଁଦିନ ଧର୍ମଛଡ଼ା କରାଇବେ, ସେଦିନ ସେ ଏଣେ ଆମେ ତେଣେ ।

ପୂଜକ—ହଁ ସମସ୍ତଙ୍କ କର୍ମରେ ଏଇନେ ସେଇଆ । ସଭିଏଁ ଏକା ଡଙ୍ଗାରେ ବସିଛେଁ । କାହିଁ—ଦଅଁ ତ ଶୁଣିବାକୁ ନାହାନ୍ତି ? ବୁଝିଲେ ସୁବାହୁ ସିଂହେ ! ଦଅଁ ଦେବତା ସବୁ ବାଆକୁ ବତା ଦିଆ ପରି ହୋଇଗଲେଣି ।

ଆଗନ୍ତୁକ ହଁ ଆଜ୍ଞା ! ସେ ଆଉ ସୁଜାଉଦ୍ଦିନଙ୍କ ଅମଳ ନୁହେଁ । ସେ ହେଲା ତକ୍‌କି ମହମଦ ଅମଦାନି ।

ପୂଜକ—ଆହା ହା । କାହିଁକି ଆଉ ସୁଜାଉଦ୍ଦିନଙ୍କ ରାଜୁତି ମନେପକଉଚ ? ସେ ପରା ପଠାଣ ନୁହେଁ – ଜଣେ ସାଧୁପୁରୁଷ । ହିନ୍ଦୁଙ୍କୁ ଆପଣା ଭାଇ ବୋଲି ମଣୁଥିଲେ । ତାଙ୍କ ଔରସରୁ କେଉଁଠ ଏ ଅଇଲା ଗୋଟାଏ କୁଳ-ବାଳୁଙ୍ଗା ।

ଆଗନ୍ତୁକ ଘଡରେ ସେଇଆ ନୁହେଁ କି ? ଏଇଟା ପଗ୍ର ଇହୁଣୀ ଆଡ଼ର । ଥୁଆ ଥୋଇଲ ଛୁଆ କଅଣ ନ କଲ ଆଉ ? ଜଗନ୍ନାଥଙ୍କ ଦେଉଳ ଲୁଟିଲ । ଦାଅଁଙ୍କୁ ସେବକମାନେ କୁଆଡ଼େ ଲୁଚେଇ ରଖିଛନ୍ତି ଠିକଣା ନାହିଁ । ତାର ଲେଭ କଅଣ କମ୍ ? ହିନ୍ଦୁ ଗ୍ରୁଇ ପଡ଼ିଲେ ତା ନାହିଁ ତେଉଁଛ ।

ପୂଜକ—ଯାହା କଲ । ଶେଷକୁ ଯାହା ଆମ ଗାଦି ଧର୍ମ ବୁଡ଼େଇଦେଲ ଚଣ୍ଡାଳ ସବୁ ଯାଇଥିଲ—ଖାଲି ଆମ ଲୋକେ ଜଗନ୍ନାଥଙ୍କ ସେବକ ବୋଲି ଗଜପତିଙ୍କି କେତେ ମାନନା କରି ଆସୁଥିଲେ । ଦିହ ସହିଲ ନାହିଁ ତାର ମୋଗଲ ଅମଳରେ ସେ ମାଇଲା ମୂଷାହୋଇ ଖୋରଧା ଗାଦି ଖଣ୍ଡିକରେ ବସିଥିଲେ । ତାଙ୍କୁ ଧରେଇ ଆଣି ଜବରଦସ୍ତି ପଠାଣ କରିଦେଲ ନବଶିଂଆ ତକ୍‌କ ମହମଦ୍ ।

ଆଗନ୍ତୁକ—ତାଙ୍କ ନାଆଁ ସହିତେ ଏବେ ବଦଳି ଗଲାଣି ସେ । ଓହୋ ହୋ କାଳ କଅଣ ନୋହିଲ ? ଗଜପତି ରାମଚନ୍ଦ୍ର ଦେବଙ୍କ ନାଆଁ ପୁଣି ହେଲ ହାଫିଜ୍ କାଦର ?

ପୂଜକ—ସେ ଜୀଇଁଛନ୍ତି ? ସେ ଜୀଇଁଛନ୍ତି ?

**ଆଗନ୍ତୁକ**—ଅଉ ଉପାୟ କଣ ? ବହୁତ ଅତ୍ୟାଚାର ବନ୍ଦୀଶାଳାରେ ସହିଲେ । ଶେଷକୁ ନାଗ୍ୱର ହୋଇ ଧର୍ମ ଛାଡ଼ିଲେ ।

ପୂଜକ—ହଉ । "ଦଇବ ଦଉଡ଼ି ମଣିଷ ଗାଈ—ଯେଣିକି ଓଟାରେ ତେଣିକି ଯାଇ" । ଜଗନ୍ନାଥଙ୍କ ଇଚ୍ଛା ! ସେ ତାଙ୍କ ସେବକକୁ ଯେବେ ପଠାଣ କରାଇବାକୁ ସୁଖ ମଣିଲେ—କରନ୍ତୁ । ସୁରଆଡ଼େ ଯେଉଁ କଥା କୁହୁଲଲାଣି —ଦେଖ ଅଳପ ଦିନ ଭିତରେ କଅଣ ହେଉଚ ।

(ଅନ୍ୟ ଜଣେ ଦର୍ଶନାର୍ଥୀ ପ୍ରବେଶ)

ଦର୍ଶନାର୍ଥୀ—(ଦାଅଁକୁ ପ୍ରଣାମ କରି) ହୋଇଗଲା, ହୋଇଗଲା, ଭାଇନା । କଅଣ ଆଉ ? ହବାକୁ ଆଉ ବାକି ଅଛୁ ନାହିଁ । ଦାଅଁ ହାରି ଗୁହାରି ଶୁଣିଲେ ଆମର । ଚନ୍ଦ୍ରଶେଖର ଜୀଅଁନ୍ତା ଠାକୁର, ଗୁହାରି ଆମର ଶୁଣିଛନ୍ତି ।

ଆଗନ୍ତୁକ—କଅଣ ହେଲା ହୋ ଦାସେ ! କଅଣ ?

ଦାସେ—ଶୁଣିନା ଅଛ ? ବଳୁକପରି ସୁରଆଡ଼େ ଖବର ଖେଳିଗଲାଣି । ତମେ ଗମ୍ଭୀରାରେ ଅଛ ବୋଲି ଜାଣିନା ପରା ! ଜିଓ ଆଉ ତକ୍‌କ ଅଛନ୍ତି କି ?

ପୂଜକ—ଏଁ କଅଣ କହୁଛ ହେ ଦାସେ ?

ଦାସେ—ହଁ ଭାଇନା ! ତକ୍‌କାଙ୍କ ତକ୍‌କ ଉଠିଗଲାଣି ।

ପୂଜକ—ଏକଦମ ଠିକ, [illegible]

ପୂଜକ—ସେ ତ ଜାଲ୍ଲାଭିତରର ଗହନ କଥା । କିଏ କହୁଚି ରୋଗରେ ମଲା, କିଏ ଆଉ କଥା କହୁଛି ।

ପୂଜକ—ଆଉ କି କଥା ?

ଦାସେ—କଉ ଲୋକର ଅନ୍ତରାତ୍ମା ଜଳିଲା ଉତ୍ତାରୁ—ଯାହା ହୁଏ । (ହାତ ଠାର ତରବାରି ଚାଳନା ଅଭିନୟ କରି) ସଜ ଦେଖି ଚଳେଇ ଦେଲା କିଏ ? ସେଉଠୁ ଭକ୍ତଙ୍କ ଚକ ··· ଗୁଳି—

ପୂଜକ—ଓହୋ ! ମୁଁ ଆଗେ ଜଳସେଇଟେ କରିପକାଏଁ । ସୁବାହୁ ସିଂହେ ! ଆଉ ଗୁହିଁଚ କଅଣ ? ଗାଧୋଇଛ ତ ! ମହାନଦୀକି ଯାଇ ଆହୁରି ବୁଡ଼ଟେ ଦିଅ । ସେଇ ଓଦା ଲୁଗାରେ ମଞ୍ଜି ପାଣି ଗରାଏ ଆଣ- ଚନ୍ଦ୍ରଶେଖରଙ୍କୁ ବୁଡ଼ା ଜଳପାଇଟେ କରିଦିଏଁ ।

ସୁବାହୁ—ଏ କଥା ପଚ୍ଛୁରୁଚ ଭାଇନା ? ଗରା କାହିଁ ?

ପୂଜକ—ରୋଷ ଦୁଆରେ ଦେଖ ଯା—

ସୁବାହୁ—ଭଲ ।

ଦାସେ—ମୋ ବେଲପତ୍ରିଡ଼ିକ ନାଗି ବଳେଇଦେଲ ! ମାନସିକ ଥିଲା—ସହସ୍ରେ ବେଲପତ୍ର ନାଗି କରିବ ।

ପୂଜକ ହଉ ହଉ, ତୁମେ ଶଙ୍ଖଟା ଧର—ମୁଁ ନାଗି କରୁଛି । (ବେଲପତ୍ର ଚଢ଼ଉ ଚଢଉ) ଆହେ ଚନ୍ଦ୍ରଶେଖର ! ଏତେଦିନେ ଗୁହାରି ଶୁଣିବାକୁ ଅବଧାନେ ହେଲ ମଣିମା !

(ଦାସେ ଘନ ଘନ ଶଙ୍ଖ ଫୁଙ୍କିଲେ)



## ପଞ୍ଚମ ଦୃଶ୍ୟ

(ବାରବାଟୀ ଦୁର୍ଗାଭ୍ୟନ୍ତର । କେତେଜଣ ସନ୍ନ୍ୟାସୀ ଓ ଦୁର୍ଲ୍ଲଭ ରାଏ ଉପସ୍ଥିତ । ଦୂରରୁ ମରହଟ୍ଟା ସୈନ୍ୟମାନଙ୍କ "ହର ହର ବଂ ବଂ" ଶବ୍ଦ ଶୁଭୁଥାଏ । )

୧ମ ସନ୍ନ୍ୟାସୀ—ଅନ୍ୟ ଉପାୟ ତ କିଛୁ ଦେଖାଯାଉ ନାହିଁ । ଆଲ୍ଲିବର୍ଦ୍ଦି ଖାଁ ନିକଟରେ ନାହକ୍ତ, ପାଟଣା ବ ସହଜ ପଥ ନୁହେଁ ।

୨ୟ ସନ୍ନ୍ୟାସୀ—କିଏ ଜାଣିଥିଲା ମରହଟ୍ଟାମାନେ ଏଭଳି ଅକସ୍ମାତ ଆସି କଟକ ଆକ୍ରମଣ କରିବେ । ଆଲ୍ଲିବର୍ଦ୍ଦିଙ୍କୁ ବର୍ତ୍ତମାନ ଖବର ଦେଇ ବିଶେଷ କିଛି ଯେ ଫଳ ହେବ—ସେ ଆଶା ମୋର ଦିଶୁ ନାହିଁ । ସେ ଆଫଗାନସ୍ଥାନ ଲଢ଼େଇରେ ଅଛନ୍ତି ।

୩ୟ—ଏଣେ ମରହଟ୍ଟା—ତେଣେ ଆଫଗାନ । ଦୁଇ କୂଳରେ ଶତ୍ରୁ ମାଳ ମାଳ ଘେରି ରହିଛନ୍ତି । ଉପାୟ କଅଣ ?

(ହର ହର ବଂ ବଂ ଶବ୍ଦ ନିକଟତର ହେଲା)

ଦୁର୍ଲ୍ଲଭ—ଏଇ ଶୁଣନ୍ତୁ ମରହଟ୍ଟାମାନଙ୍କ ଜୟଧ୍ୱନି । ମୁଁ ମହାନଦୀ କୂଳ ଜାଗିରେ ବ୍ୟସ୍ତ ଥିଲି । ଠିକିଏ ହେଲେ ସମ୍ବାଦ ପାଇ ନାହିଁ ଯେ ଶତ୍ରୁ ଆସି ଦ୍ୱାର ଦେଶରେ । ନୋହିଲେ ଦୁର୍ଲ୍ଲଭ ରାଏ ଏ ଆକ୍ରମଣରେ ଠିକଣା ଜବାବ ଦେବାକୁ ପଛାଇ ନ ଥାନ୍ତା । ଏତେବେଳେ ଆପଣମାନେ କି ଉପଦେଶ ଦିଅନ୍ତି ? ଜଣେ ନୁହେଁ ଦୁଇଜଣ ନୁହେଁ, ଏକୋଇଶ ଜଣ ମରହଟ୍ଟା ସେନାପତିଙ୍କୁ ଆଲ୍ଲିବର୍ଦ୍ଦି ବିଶ୍ୱାସ ଦେଖାଇ ଛାଉଣୀରେ ଶେଷ କରିଛନ୍ତି । ରଘୁଜୀ ଭୋନ୍‌ସଲା ତାର ପ୍ରତିଶୋଧ ନେବାକୁ ଅତର୍କିତ ଭାବରେ ଓଡ଼ିଶାରେ ଛାଉଣୀ ତୋଳିଛନ୍ତି । ମୁଦ୍ଧକରି ଜିଣିବାର ଆଶା ତ ଏତେବେଳେ ନାହିଁ ।

ଜଣେ ସନ୍ନ୍ୟାସୀ—ସନ୍ଧି ?

ଦୁର୍ଲ୍ଲଭ—ସନ୍ଧି ! ସେ କ'ଣ ସମ୍ଭବ ? ବରଂ ମୋର ଆତ୍ମସମର୍ପଣ ଶ୍ରେୟସ୍କର ।

ସନ୍ନ୍ୟାସୀ—ତା'ଛଡ଼ା ଅନ୍ୟ ଉପାୟ କିଛି ନାହିଁ ।

(ଅବ୍‌ଦୁଲ, ଅଜିଜ୍ ପ୍ରଭୃତି କେତେଜଣ ସେନାଧ୍ୟକ୍ଷ ପ୍ରବେଶ)

ଦୁର୍ଲ୍ଲଭ—ଏଇ ତ, ମହମଦ୍ ଅଜିଜ୍ ଆସୁଛନ୍ତି । ଆପଣ କି ପରାମର୍ଶ ଦେଉଛନ୍ତି ଅଜିଜ୍ ଖାଁ ସାହେବ ?

ଅଜିଜ୍ ମୁଁ ଆପଙ୍କେ ବିଚାର ଶୁଣିପାରିଛି । କିନ୍ତୁ ମୁଁ ସେଥିରେ ଏକ ମତ ନୁହେଁ । ଆତ୍ମ ସମର୍ପଣ କଲେ ଆପଣ କରନ୍ତୁ, ଆମେମାନେ ନୁହେଁ । ବାରବାଟୀ କିଲ୍ଲା ଆମେମାନେ ମରହଟ୍ଟା ଦଖଲରେ ଛାଡ଼ିଦେବୁ ନାହିଁ ।

ଦୁର୍ଲ୍ଲଭ—ଅଜିଜ୍ ଖାଁ ସାହେବ ! ଆପଣ ବୁଝିପାରୁ ନାହାନ୍ତି ଏ ଦମ୍ଭର ପରିଣାମ କଅଣ ହେବ ।

ଅଜଜ୍—ଆପଣ ଆତ୍ମସମର୍ପଣ କରିବେ—କରନ୍ତୁ, ମୁଇ ଥାଇ କିଲ୍ଲା ଆମେ ଛାଡ଼ୁ ନାହୁଁ; ତା'ପରେ ଦେଖାଯିବ ।

ଦୁର୍ଲ୍ଲଭ—ମରହଟ୍ଟାମାନଙ୍କ ଆଚରଣ ଯାହା, ସେଥିରେ ଦେଶ ଛାରଖାର ହୋଇଯିବ, ବିଜୟ ଆଶା ଅତି ଅଳ୍ପ । ସୈନ୍ୟମାନେ ସଙ୍ଗଠିତ ନୁହନ୍ତି । ଏହାଛଡ଼ା ମୋତେ ଅନ୍ୟ ଉପାୟ କିଛି ଦିଶୁ ନାହିଁ । (ଗୋଳା ଶବ୍ଦ ଓ "ହର ହର ବଂ ବଂ" କୋଳାହଳ) ଏଇ ଶୁଣ ଅଜଜ୍ ଖାଁ ସାହେବ ! କିଲ୍ଲା ଛାଡ଼ିଦିଅ । (ହାତ ଧରି) ଏତେବେଳେ ମୋ କଥା ରକ୍ଷାକର ।

ଅଜଜ୍—ନାଁ, ଅଜଜ୍‌ର ଗୋଟାଏ କଥା ।

(ଜୋର୍ ଗୋଳା ଶବ୍ଦ)

ଦୁର୍ଲ୍ଲଭ—ମହମଦ ଅଜଜ୍ !

ଅଜଜ୍—(ହାତ ଛଡ଼ାଇ) ନା ନା—

ଦୁର୍ଲ୍ଲଭ—ତା'ହେଲେ ଶତ୍ରୁ ସେ ଗଡ଼ ଦ୍ୱାରରେ । ମୋର ଆଉ ଉପାୟ ନାହିଁ—ମୋର ଆଉ ଉପାୟ ନାହିଁ—(କହି କହି ଚାଲିଗଲେ)

ଅଜଜ୍—ହୁସିଆର ମହମଦ୍ ଅଜଜ୍ । ଦୁର୍ଲ୍ଲଭ ସିଏ ଭୀରୁ । ଯାଉ, ଆତ୍ମସମର୍ପଣ କରୁ ! ଗଡ଼ଦ୍ୱାର ବନ୍ଦକରି ସେନା ଜଗାଇ ରଖ । ଏ କିଲ୍ଲା ଆମ ଦଖଲରେ ରହୁ । ଯାଅ । ତୁମେମାନେ ଆଉ ଏଠି କାହିଁକି ? ଯାଅ ସନ୍ନ୍ୟାସୀ ଦଳ । ଅବଲମ୍ବେ ଆତ୍ମରକ୍ଷା କର । ବୋଲ ବୀର ସେନା—"ଆଲ୍ଲା ହୋ ଆକବର ।"

ଦୂରରୁ "ହର ହର ବଂ ବଂ,' ଶିବଶମ୍ଭୋ ।

(ଗୁଳି ଶବ୍ଦ ଶୁଭୁଥାଏ)

ଅଜଜ୍—(ଉତ୍କଟ ହାସ୍ୟ) ଆଲ୍ଲା ହୋ ଆକବର ।



# ପଞ୍ଚମ ଅଙ୍କ

**ଉପକ୍ରମ**--

(ବାରବାଟୀ ତୋରଣ ଦ୍ୱାର—ଉପସ୍ଥିତ ପୂର୍ବୋକ୍ତ ଦୁଇଜଣ ବୃଦ୍ଧ । ଦୂରରୁ ଶୁଭୁଥାଏ—("ହର ହର ବଂ ବଂ—ଶିବ ଶମ୍ଭୋ"))

୧ମ ବୃଦ୍ଧ—(ବାରବାଟୀ ଦୁର୍ଗ ଧାରଣ) ଏ ଦୁର୍ଦ୍ଦିନ ଭିତରେ ପୁଣି ଏ କ ଜୟଧ୍ୱନି ଭାଇ ? ଏ ପୁଣି କଏ ?

୨ୟ—(ବଟବୃକ୍ଷ ଆସ୍ଥା) ଏହିମାନେ ହେଉଛନ୍ତି ବର୍ତ୍ତମାନର ବିଜେତା । ଓଡ଼ିଶାର ବିପତ୍ତି ମାଡ଼ି ଆସିଲା—ଭବିଷ୍ୟତ ଅତି ଭୟଙ୍କର । ଏହିମାନେ ମରହଟ୍ଟା ବଂଶ ଯାହାଙ୍କୁ ଲୋକେ ବର୍ଗୀ ବୋଲି କହୁଛନ୍ତି । ଏମାନଙ୍କ ଅମାନୁଷିକ ଅତ୍ୟାଚାର, ଲୁଣ୍ଠନ, ପୀଡ଼ନରେ ଦେଶ ଡାହି ଡାହି ଡାକ ଛାଡ଼ୁଛି । ଗ୍ରାମ, ଜନପଦ, ଲୋକାଳୟ—ଜନଶୂନ୍ୟ । ହର ହର ବଂ ବଂ ଶବ୍ଦ ବିକଟ ହେଲାଣି । ବିଜୟ-ମଦରେ ସେମାନେ ଆଜି ଦିଗବିଦିଗ ମାନୁ ନାହାନ୍ତି । ରଘୁଜୀ ଏମାନଙ୍କର ନେତା—ଚାଲ ଚାଲ, ଲୁଚିରହି ତାଙ୍କୁ ବାଟ ଛାଡ଼ି ଦିଅ ! ନୋହିଲେ—

୧ମ—ନୋହିଲେ ?

୨ୟ—ନୋହିଲେ, ଜୀବନ ବିପଦାପନ୍ନ ହେବାର ଖୁବ୍ ସମ୍ଭାବନା । ଆସ ଆସ ବାହାର, ଆଉ ବିଳମ୍ବ କର ନାହିଁ । (ଦୁହେଁ ଏକ ଦିଗକୁ ଗଲେ) (ହର ହର ବଂ ବଂ ଶବ୍ଦ ସହ ଜ୍ୱଳନ୍ତ ମଶାଲ ଧରି ଦୁର୍ଗ ମଧ୍ୟରେ ପ୍ରବେଶ କଲେ ମରହଟ୍ଟା ସୈନିକ ଏବଂ ବିପରୀତ ଦିଗକୁ ଚାଲିଗଲେ—ସେମାନଙ୍କ ସିବାପରେ ଧୀରେ ଧୀରେ ବାହାର ଆସିଲେ ପୂର୍ବୋକ୍ତ ବୃଦ୍ଧ ଦୁଇଜଣ)

୧ମ—ଏଇମାନେ ସବୁ ସେହି ବିଜୟୀ ମରହଟ୍ଟା ସେନା ? ହାତରେ ଦୀପ୍ତ ମଶାଲ, ମୁଖରେ ପିଶାଚର ହସ କି ଭୟଙ୍କର ! ସାକ୍ଷାତ କାଳାନ୍ତକ ପରି କି ଦୁର୍ଦ୍ଦଶ ଗତି !

୨ସ୍ୱ—ଦେଶସାରା ଏମାନଙ୍କ ନିର୍ଯ୍ୟାତନାରେ ପୀଡ଼ିତ । ଧନ, ମାନ, ଜୀବନ—
କାହାର ସ୍ଥିରତା ନାହିଁ । ଏଣେ ମୁସଲମାନ, ତେଣେ ମରହଟ୍ଟାମାନଙ୍କର
ରାଜ୍ୟ ବିସ୍ତାର ଲୋଭ ତଳେ ସାରା ଉତ୍କଳ ଦଳି ହୋଇଗଲାଣି ।

୧ମ—ଏତିକିରେ ବିପଦ ଶେଷ ହୋଇଯାଉ ନାହିଁ । ଏଇ ଦେଖୁଛ । ଦିଗ୍‌ବଳୟରେ
ଆଉ ଏକ ଧୂମକେତୁର ସଞ୍ଚାର ହେଉଛି—

୨ସ୍ୱ—ବୁଝିପାରିଲି ନାହିଁ ତୁମ କଥାର ମର୍ମ....

୧ମ—ଶୁଣି ନାହିଁ, ଏଇ ବାଟେ ଲୋକେ କଥାବାର୍ତ୍ତା ହୋଇ ଯାଉଛନ୍ତି—ବହୁଦିନ
ତଳେ ସାତ ସମୁଦ୍ର ଦରିଆ ପାରିରୁ ଦଳେ ଗୋରା ଲୋକ ଆସି ଓଡ଼ିଶାରେ
ବାଣିଜ୍ୟ କରିବାକୁ ଅନୁମତି ନେଇଥିଲେ । ସେମାନେ ବଣିକର ତୁଲାଦଣ୍ଡ
ଛାଡ଼ି ବର୍ତ୍ତମାନ ରାଜଦଣ୍ଡ ଧରିବାକୁ ଉଦ୍ୟମ କଲେଣି ।

୨ସ୍ୱ—ଏଥିରେ ଆଉ ଆଶ୍ଚର୍ଯ୍ୟ କଅଣ ? ଦୁଇ ପକ୍ଷର ବିବାଦରେ ତୃତୀୟ ପକ୍ଷର ହିଁ
ଲାଭ ହୋଇଥାଏ । ସେମାନେ କୌଶଳୀ—ଝଲମଲ କରି ଖାପ ଭିତରେ
ଖାରଧାର ତରବାରି ଥିଲାଭଳି, ସେ ଜାତିର ମିଠାକଥା ତଳେ ଅଛି ପ୍ରବଞ୍ଚନା,
ଶଠତା, ରାଜ୍ୟ ଲିପ୍‌ସା—ସେ ସଂବାଦ ମୋ କାନକୁ ମଧ୍ୟ ଆସିଛି ଭାଇ !
କ୍ଲାଇବ ବୋଲି ଜଣେ ବିଖ୍ୟାତ କୂଟଚକ୍ରୀ ବର୍ତ୍ତମାନ ତାଙ୍କର ନେତା ।

୧ମ—ଓଡ଼ିଶାର ଭାଗ୍ୟ କ'ଣ ଏହିପରି ଅସ୍ଥିର ରହିଥିବ ଚିରକାଳ ?

୨ସ୍ୱ—ଆଉ କାହିଁକି ତୁମେ ସେ ବିଗତ ସୁଖ ସୂର୍ଯ୍ୟର ଉଦୟ ଆଶା ରଖୁଛ ଭାଇ !
ଯେଉଁଠି ଏକତା ନାହିଁ, ଯେଉଁଠି ଭ୍ରାତୃବିବାଦ ଘରେ ଘରେ ବସା ବାନ୍ଧି
ରହିଛି, ସେଠି ସୁଖଶାନ୍ତି ସେ ସ୍ୱପ୍ନ । ଏଇ ଶୁଣ, ଗୃହଆଡ଼େ ହାହାକାର
ଧ୍ୱନି ! ଦୁର୍ଭିକ୍ଷ ମଡ଼କରେ ଉତ୍କଳ ଶିରିଛଡ଼ା ହୋଇପଡ଼ିଲାଣି ।

(ଦୂରରୁ ଗୀତ ଶୁଭିଲା)

୧ମ—ରହ ରହ, କିଏ ଏଣେ ଆସୁଛି । ଉଃ, କି କରୁଣ ସଙ୍ଗୀତ !

୨ସ୍ୱ—ଭୋର ହେଲାଣି । ରାତିରେ ନିଦ୍ରାଦେବୀଙ୍କ କୋଳରେ ବିସ୍ମୃତ ଦୁଃଖ ଶୋକ
ପାସୋରି ଯାଇଥିଲା । ପ୍ରଭାତର ସୂର୍ଯ୍ୟ ତା'ଲାଗି ଆଣି ଦେଇଛନ୍ତି—
ଜୀବନର ସନ୍ଧିକ୍ଷଣ । ଆସ, ଦେଖିବ ଆସ । ହୁଏତ କିଏ ଜଣେ କ୍ଷୁଧାଗ୍ରସ୍ତ
ଦୁଃଖରେ ଗାଇ ଗାଇ ଚାଲିଛି । ଦେଖି ଆସିବ ଚାଲ—ସେଇ ସୁନା
ଦେଶର ପ୍ରେତ କଙ୍କାଳ ।

(୧ମକୁ ନେଇ ଚାଲିଗଲେ)



## କ୍ରୋଡ଼ ଦୃଶ୍ୟ

(କଟକର ମହାନଦୀ କୂଳବାଲି ପଥରେ ଜଣେ ଭିଖାରୀ ଗାଇ ଗାଇ ଯାଉଛି)

—ଗୀତ—

କି କାଳ ହେଲା ଆସି
ଉଡ଼ଯାଏ ଫାକାସି
ଅସ୍ତ୍ର ନ ରହିଲା-ଜାତିକୁଳ ମାନ
ସରୁଆ ମଣିଷ ଗଳାରେ ରଶି ॥ ୦ ॥

ପଢ଼ିଆ ପଡ଼ିଛି ବାରମାଣ ଗୃହ
ଖାଉଁଦ କୋଠାରେ ନାଢ ତ ଉପାୟ
ଛୁନଆଁରେ ଛଅ ଘାଆ ଦହଯାକ
ଗୃଳ ନ ବାନ୍ଧିଲେ କେନ୍ଦୁ ଭରସି ହେ ॥ ୧ ॥

ଗାଆଁ ଦାଣ୍ଡେ ଘୋଡ଼ା ଠାପୁ ମାଳ ମାଳ
କୋକୁଆ ଭୟ ତ ବରଗୀ ଚହଲ
ଉଢଆଣି ପିଲା—ଶୁଣାଇଲା ମାଆ
ବରଗୀ ଆସିଲା ଦେଶକୁ ପଶି ॥ ୨ ॥



## ପ୍ରଥମ ଦୃଶ୍ୟ

(ବାରବାଟୀ ଦୁର୍ଗାଭ୍ୟନ୍ତର । କେତେକ ମରହଟ୍ଟା ସର୍ଦ୍ଦାର ଏକତ୍ରିତ ହୋଇଛନ୍ତି । ସମସ୍ତେ ଭୟଭୀତ ପରି ବ୍ୟସ୍ତମନା)

୧ମ—ରଘୁଜୀ ଭୋନ୍‌ସଲଙ୍କୁ ଆଉ ଅପେକ୍ଷା କରି ଲାଭ ନାହିଁ । ସେ ବିରାଟ ସେନା ଗଠନ କରିଛନ୍ତି ସତ—ମାତ୍ର ଓଡ଼ିଶାଆଡ଼େ ତାଙ୍କର ଦୃଷ୍ଟି ନାହିଁ କହିଲେ ଚଳେ ।

୨ୟ—ମାନ୍ଦ୍ରାଜରୁ ଫିରିଙ୍ଗି ଫଉଜ ଆସିଲେ ଗଞ୍ଜାମ, ଖବର ମିଳିଲା ସମୁଦ୍ର କୂଳେ କୂଳେ ଆସି ମାଣିକପାଟଣାରେ ପହଞ୍ଚିଲେ ସେମାନେ । କେହି ବାଧା ଦେବାକୁ ନାହିଁ । ବିଶ୍ୱାସଘାତକ ଫତେ ମହମ୍ମଦ ବାଟ ମଣାଇ ସେମାନଙ୍କୁ ନେଇ ଆସିଲା । ଅଥଚ ଜଣେ ହେଲେ ମରହଟ୍ଟା ସେନା ନାହିଁ ଯେ ତାଙ୍କୁ ବାଟ ରୋକିବ ।

୩ୟ—ତା'ଛଡ଼ା ଶୁଣିଲ ତ ଜଗନ୍ନାଥ ମନ୍ଦିର ବର୍ତ୍ତମାନ ଫିରିଙ୍ଗି ହାତରେ ପଡ଼ିଲାଣି । ଆମ ସୈନ୍ୟ ମଝିରେ ମଝିରେ ବଣ ଜଙ୍ଗଲରେ ଲୁଚି ତାଙ୍କୁ ଟିକିଏ ହଇରାଣ କରିଥିଲେ ମାତ୍ର ।

୪ର୍ଥ—ପିପିଲି ପାଖ ମୁକୁନ୍ଦପୁରରେ ତାଙ୍କ ସହିତ ଅବଶ୍ୟ ଆମର ଲଢ଼େଇ ହୋଇଛି ; କିନ୍ତୁ ସେ ଅତି ସାମାନ୍ୟ ।

୧ମ—ରଘୁଜୀଙ୍କ ଦୋଷରୁ ଏସବୁ ହେଲା । ଗୋରା ଫଉଜଙ୍କୁ ଓଡ଼ିଶା ଭିତର ଦେଇ ଯିବାକୁ ବାଟ ଛାଡ଼ି ଦେବାଟା ହେଉଚି ପହିଲି ଭୁଲ୍ । ଟମନାଜୀଙ୍କୁ ତ ଘୁଷ୍ ଦେଇ ଇଂରେଜମାନେ ହାତ କରିଥିଲେ ।

୨ୟ—ଆଚ୍ଛା ଏଗୁଡ଼ା ଥିଲେ କେଉଁଠି ? ଏଇ ତ ତିନି ଚାରି ବର୍ଷ ହେଲା ତାଙ୍କ ନାଆଁ ଶୁଣାଗଲା । ବ୍ୟବସାୟ କରିବାକୁ ଆସି ଏଇନେ ତ ମନେକଲେଣି ଏ ଦେଶ ତାଙ୍କର, ଆଉ ଆମେ ବିଦେଶୀ ।

୩ୟ—ମନେକରିବାର କାରଣ ଆମେ କରିଦେଇଛୁଁ । ଆମରି ଲୋକେ ତାଙ୍କ ସାହାଯ୍ୟ ନେଇ ଜଣେ ଜଣକୁ ଦବାଇବାକୁ ବସିଲେ । ତେଣୁ ସହଜରେ ସେମାନେ ଆମର ବଳ କଷିନେଲେ । ଆଉ ଗୋଠ ଫଟା ଫଟା ହେବାର ସୁଯୋଗ ସେମାନେ ନେବାଟାରେ ତାଙ୍କୁ ଦୋଷ ଦେଇ ଲାଭ କଅଣ ?

୪ର୍ଥ—ସେ ପୁରୁଣା ପୋଥିର ପୁଡ଼ା ଲେଉଟାଇ କିଛି ନାହିଁ । ପାରିଲେ ଏ ବାରବାଟୀ ଦୁର୍ଗ ରକ୍ଷା କର । ସେମାନେ ଯେ ବିନା ବାଧାରେ କଟକ ପହଞ୍ଚି ଯାଉଛନ୍ତି । ଆମେ ସବୁ ଲାଲବାଗ କଚେରୀ ଛାଡ଼ି ପଳେଇ ଆସି ଦୁର୍ଗଭିତରେ ରହିଗଲେ ଯେ ଦେଶ ରହିବ, ପ୍ରାଣ ରହିବ—ଏ ଆଶା ବୃଥା ।

(ଜଣେ ଚର ପ୍ରବେଶି ପ୍ରଣାମ କଲା)

୨ୟ—ଖବର କଣ ?

ଚର—ବଙ୍ଗଳାରୁ ଦଳେ ଫିରଙ୍ଗି ବାଲେଶ୍ୱରରେ ଉତୁରିଲେ । ତା'ଭିତରେ ପାଞ୍ଚଶହ ଦେଶୀ ସିପାହି—କେତେ ବନ୍ଧୁକଧରି ବି ଅଛନ୍ତି । ଆମର ଘୋଡ଼ସବାର ଫୌଜ ତାଙ୍କ ସହିତ ଲଢ଼ି ହାରି ପଳାଇ ଆସିଲେ ।

୧ମ—ତା'ପରେ ?

ଚର—ବର୍ତ୍ତମାନ ଗୋଲା ଚପୋଖରି ଦୁର୍ଗ ତାଙ୍କ ହାତରେ ।

୩ୟ—ବାଲେଶ୍ୱର ଫୌଜଦାର ମୟୁର ପଣ୍ଡିତ କିଛି ବାଧାଦେଲେ ନାହିଁ ତାଙ୍କୁ ?

ଚର—ହଁ, ବାଧାଦେଇ ହାରି ଘୋର ପଳାଇଗଲେ । ଘୋର ଏବେ ଫିରଙ୍ଗିଙ୍କ ହାତରେ । ମୟୁର ପଣ୍ଡିତ କୁଆଡ଼େ ପରି ପଳାଇ ଆସିଛନ୍ତି କଟକ ?

୪ର୍ଥ—ଆଉ କଟକ ? କଟକ ପଳାଇ ଆସି କଅଣ କରିବେ ? ଏଇ ତ ଖବର ମିଳୁଛି କନକା, କୁଜଙ୍ଗ ଦୁର୍ଗମାନ ଭାଙ୍ଗି ଆଉ ଗୋଟିଏ ଫିରଙ୍ଗି ଫୌଜ କଟକ ପହଞ୍ଚିଲେଣି । ସେମାନଙ୍କ ତୋପ, ଗୁଳି, ହାତ-ହତିଆର ଯାହା ଥିଲା ସବୁ ଫିରଙ୍ଗି ହାତରେ ପଡ଼ିଛି ।

୧ମ—କଥା ହେବାର ସମୟ ଆଉ ନାହିଁ—ଦୁର୍ଗ ରକ୍ଷାଲଗି ମୁଣ୍ଡରୁ ପାଣି ଛଡ଼ାଇ ବାହାରି ପଡ଼ । ତା'ପରେ ଭାଗ୍ୟର ଯାହା ଥିବ । ଚର ! ତୁମେ ଯାଅ ଦୁର୍ଗ ଭିତରେ ଖବର କରିଦିଅ—ସମସ୍ତେ ତିଆର ହୋଇପଡ଼ନ୍ତୁ ।

(ସହସା କମାଣ ଶବ୍ଦ ଶୁଭିଲା)

୨ୟ—ଏ କଅଣ ? ଫିରଙ୍ଗି ଫୌଜ ଦୁର୍ଗ ଆକ୍ରମଣ କଲେ ବୋଧହୁଏ ? ଉଠ ଉଠ ଚାଲ । (ଘନ ଘନ ତୂର୍ଯ୍ୟନାଦ)

୩ୟ—ଚାଲ ଚାଲ । 'ହର ହର ବଂ ବଂ ଶିବ ଶମ୍ଭୋ' ।

ସମସ୍ତେ—'ହର ହର ବଂ ବଂ ଶିବ ଶମ୍ଭୋ ।'

(ତରବାରି କୋଷମୁକ୍ତ କରି ବାହାରି ପଡ଼ିଲେ—ତୋପ ଓ କମାଣର ଧ୍ୱନି ମଧ୍ୟରେ କୋଳାହଳ ଶୁଭୁଥାଏ)

●

## ଦ୍ୱିତୀୟ ଦୃଶ୍ୟ

(କଟକ ସହରର ଗୋଟିଏ ପଥ—ଦୁଇଜଣ କଟକବାସୀ ଆସିଲେ)

୧ମ—ଛୁ ଛୁ ଛୁ, ଆରେ ଲଢ଼େଇ ନା ଫଢ଼େଇ ? ଫୁସ୍ , ନା ମରଦ ଗୁହ୍ଲକ । କାଣ୍ଡା ବଲେଇ ଆମର ପର ଅସର୍ପାଙ୍କ ଉପରେ ଗାଜପଣ ଦେଖଉଥିଲେ ନାଁ—

୨ୟ—ହଁ ହଁ, ଅଢ଼ୁଗୁରେ ସିଆଣିଆ ହେଇ ଏଡ଼େ ପାଟିକର କଥାଗୁଡ଼େ କହନା ମ । କେଉଁଠି କଅଣ ଥାଏ—କେତେବେଳେ କୋଉ କଥା । ଭୂନ ଭୂନ କହରେ ବାବୁ । ଏ ପରା ବରଗୀ ଅମଳ ।

୧ମ—ଆଉ ବରଗୀ ! ନାକ ଦଣ ଉପୁଡ଼ା ସରଲଣି ତାଙ୍କର । ବାରବାଟୀକି ଦେଖିଲଣି ? ଆହା ! ସେ ମେଘନାଦ ପାଚେରି ଆଉ ଅଛି ? କେଡ଼େ କେଡ଼େ ପଥର—ଏକାବେଲକେ ତୋପ ମାଡ଼ରେ ଚୂନ୍‌ଭୂତ୍ । କଏ କୁଆଡ଼େ ଥାନ ଗୁଡ଼ ପଳେଇଲେଣି—ମରହଟ୍ଟା ନାଆଁ ଲୁଚଗଲଣି ।

୨ୟ—ଦେଖ ଫେରେ କଅଣ ହଉଚ । ସେ ସିନା ଗଲେ, ମ୍ଲେଚ୍ଛ ତ ନାଲ ମୁହାଁ ପଞ୍ଝାଏ ପୁଣି ଆସିଛନ୍ତି ସାତ ସମୁଦ୍ର ଦରଆ ପାରରୁ କଅଣ ଆମକୁ ରଜା କରଦେବେ ବୋଲ ? ସବୁ ତଣ୍ଟଚପାଯାକ ଏକାଠେଇଁ ହେଇଛନ୍ତି ରେ । ଆଉ ସେ ଦନ କାଳ ନାହିଁ । ତମ ରଜା ନାହିଁ—ତମ ରାଜୁତି ନାହିଁ ।

୧ମ—ସେ କଥା ସତ । ମୁଁ ତ ପୁଣି ମୋ ପିଲା କବଲଙ୍କୁ ଠନଦନ ହେଲା ଟାଙ୍ଗିରେ ତାଙ୍କ ମାମୁଁ ଘରକୁ ପଠାଇ ଦେଇ, ଏଠି ଗଣ୍ଡିପୁଅ ଅନନ୍ତା ପର ଛପର ଜଗି ପଡ଼ିରହିଛି ।

୨ୟ—ତୋର ସିନା ଭାଇ ବନ୍ଧୁ ଘରଟେ ଥିଲ ବୋଲ । ସତ୍ତଙ୍କର କଅଣ ସେ ସଜ ଅଛି ? ମୁଁ କଅଣ କରିବ ବୋଲ ଭାଳେଣି ପଡ଼ିଛି ।

୧ମ—ଏଇମିତି ଭାବୁ ଭାବୁ କୁମ୍ଭୀର ନେଇ ମଚ୍ଛି ନଇରେ । ବେଗେ ପିଲାଙ୍କୁ କୋଉଠିକି ପଠାଇ ଦେ । ନଇଲେ ଜାଣୁଚୁ ତ ଲୁଟ ତରାଜ ନଷ୍ଟ ହେବ । ଘୁଡ଼ିଏ ଆମରପର କୋଉ କୂଳ ନ ଥିବା ଲୋକ ପୋକମାଛି ପର ହାଣ ଗୋଳରେ ଯିବେ । ଧନ ଜୀବନ କୋଉଥିରେ ଠିକଣା ନାହିଁ ।

(ନେପଥ୍ୟ ଗୋଳମାଳ ଶୁଭିଲ ।)

୨ୟ—ଆରେ ହେ । ରହ ରହ । କାନେଇଲୁ—ଗୋଟାଏ କ'ଣ ବଡ଼ ଗୋଳମାଳ ଶୁଭୁ ନାହିଁ ?

(ବନ୍ଧୁକ ଶବ୍ଦ ଓ ଚତ୍କାର)

୧ମ—ପଳେଇ ଚାଲ, ପଳେଇ ଚାଲରେ । ଯାଇକି ଯାଇ ଦେଖିଲେ ହେବ । କଅଣ ହେଲା ?

୨ୟ—ଆଉ ଯାଇ ? କହୁଥିଲି ପରା—ଗୁରୁଏ ତ ଛେଦ ପଡ଼ିବେ । ମାଆ କଟକ ଚଣ୍ଡୀ ରକ୍ତମୁଖା ହୋଇ ରହିଛି ।

(ଗୋଲମାଲ ନିକଟ ହେଲା)

୧ମ—ଆରେ ଏଠି ଥାଇ । କଅଣ କରିବୁ ?

୨ୟ—ଆଉ ହେଠିକି ଗଲେ ଅଧିକଟା କଅଣ ହବ ଅବା ? ସେଇଠି ଥିଲେ ମରିବା କଥା ତ ସତ । ଚାଲ, ଖଣ୍ଡେ ଅଧେ ହାତ ହତିଆର ଯାଉଁଟି ଲଢ଼ି ଲଢ଼ି ଯୋଉ ଯାଏ ଯିବ ।

୧ମ—ଧେତ୍, ଶିଳ ଶିଳପୋଡ଼ା ଗଗନେ ଉଡ଼ୁଛନ୍ତି ନା—ଶିମୁଳି ତୁଳା ବୋଇଲି ମୁଢ଼େ ରଖ । ହଇରେ, ଜଣେ ଦି'ଜଣ ଆମେ ହତିଆର ଧରି କରିବା କଅଣ ? ସେ ସବୁ ନୁହେଁ—ଆଗେ ଦେଖ୍ । ଏ ଗୋଲମାଲ କୋଉଠି କାହିଁକି ଆଉ କିଏ ଭିଆଣ କରିଛି ? ଏପଟ କି ସେପଟ ?

୨ୟ—ଚାଲ୍ ଚାଲ୍ । ଆଉ କଥା କହିବାକୁ ବଳ ନାହିଁ କି ବେଳ ନାହିଁ । ଆ—ଏଠୁ ଯିବା । ବାଟଟା—କାଳେ ହାବୁଡ଼େ ପଡ଼ିଲେ ଅକାରଣେ ଗଣ୍ଡି ମୁଣ୍ଡ ଅଲଗା ଅଲଗା ହେବ ।

(ଗୋଲମାଲ ଅତି ନିକଟ ହେଲା)

୧ମ—ଶୁଭୁଛି ? କେଡ଼େ ପାଖରେ ଏ ଗୋଲମାଲ ? ଆଉ ସେ ବିଷୟର କରିବା ବେଳ ଏଇନେ ନୁହେଁ । ଆଗ ପଳେଇଆ—ପଳେଇଆ । ଜୀବନ ବଞ୍ଚା ।

(ଦୌଡ଼ି ଦୁଇଜଣଯାକ ପଳେଇଲେ)



## ତୃତୀୟ ଦୃଶ୍ୟ

(ବାରବାଟୀ ଦୁର୍ଗ । କେତେକ ଇଂରେଜ ସେନାପତି ଦୁର୍ଗ ମଧ୍ୟରେ ଇତସ୍ତତଃ ପରିଭ୍ରମଣ କରୁ କରୁ କଥାବାର୍ତ୍ତା ହେଉଥିଲେ )

୧ମ—ହଁ ୧୮୦୩ ଅକ୍ଟୋବର ୧୪ ତାରିଖ ଦିନ ମାଲକାଣ୍ଡି କିଲ୍ଲା ଆମର ହାତରେ ପଡ଼ିଲା ସତ, ମାତ୍ର କଟକ ସହରରେ ଯେ କେହି ବାସିନ୍ଦା ନାହାନ୍ତି । ନାଗରା ଦେଇ ଲୋକମାନଙ୍କୁ କହିଦିଅ ସେମାନେ ଭୟ ନ କରି ଘରକୁ ଫେରି ଆସନ୍ତୁ । ଆମର କମ୍ପାନୀ ବାହାଦୁର କାହାରି ଉପରେ ଅନ୍ୟାୟ ଅତ୍ୟାଚାର କରିବେ ନାହିଁ । ସେମାନେ ସୁଖରେ ଆପଣା ଆପଣା ଘରେ ରୁହନ୍ତୁ ।

୨ସ୍ୱ—ଲୋକମାନେ ଟାଙ୍ଗି ପଳାଇଥିବାର ଶୁଣାଯାଏ । କଟକରେ ଆଉ ସେଠାରେ ନାଗରା ଦେଇ ସବୁକଥା ଲୋକମାନଙ୍କୁ ଶୁଣାଇ ଦିଆଯିବ । ଆପଣ ଶୁଣି ସନ୍ତୁଷ୍ଟ ହେବେ ଯେ କର୍ଣ୍ଣେଲ ହାରକଟ କନକା କୁଜଙ୍ଗର ଦୁର୍ଗ ସବୁ ଘାଙ୍ଗି-ଦେଇ ଆସିଥିଲେ । ଆମର ଚାର ସର୍ତ୍ତ ବ ସେମାନଙ୍କଠାରୁ ଲେଖାଇ ନିଆ ହୋଇଛି । ପ୍ରଥମ ହେଲା ରାଜା କମ୍ପାନୀ ବାହାଦୂରଙ୍କ ବଶ୍ୟତା ସ୍ୱୀକାର କରିବେ । ଦ୍ୱିତୀୟରେ ଧାର୍ଯ୍ୟ କର ଠିକ କିସ୍ତିରେ ଦେବେ । ତୃତୀୟ ସର୍ତ୍ତ ହେଲା କେହି ବାହାର ଶତ୍ରୁ, କମ୍ପାନୀ ବାହାଦୂରଙ୍କ ରାଜ୍ୟ ଆକ୍ରମଣ କଲେ ସେମାନେ ସେମାନଙ୍କ ପାଖେ ଥିବା ସୈନ୍ୟମାନଙ୍କ ସାହାଯ୍ୟ ଦେବେ ।

୩ସ୍ୱ—(ହସି) This is funny indeed—ସେମାନଙ୍କର ଆଉ ଅଛି କଅଣ ?

୧ମ—Still then—ଆଉ ଗୋଟାଏ ସର୍ତ୍ତ । Well, this is policy ! ସେମାନଙ୍କର ଗୋଟାଏ ଗର୍ବ ଥିବ ଯେ ତାଙ୍କର ବ ଫୌଜ ଅଛି । ଆଚ୍ଛା, ଆଉ ସବୁ ଜମିଦାରମାନଙ୍କଠାରୁ ଏକରାରନାମା ଲେଖାଇ ନିଆଗଲା ତ ?

୨ସ୍ୱ—(କାଗଜ କାଢ଼ି) ହଁ, ବାରଜଣଙ୍କର କାମ ଶେଷ ହୋଇଛି । ଆସ୍ତେ ଆସ୍ତେ ଅନ୍ୟମାନେ ଆସିଯିବେ । କେବଳ କେଉଁଝର, ବୌଦ ଆଉ ଆଠମଲ୍ଲିକ ଏପର୍ଯ୍ୟନ୍ତ ଏକରାରନାମା ଦେଇ ନାହାନ୍ତି ।

୩ସ୍ୱ—No matter, ଆସିଯିବେ ଆସିଯିବେ । Sooner or latter—କିନ୍ତୁ ଭୂମି ବନ୍ଦୋବସ୍ତ କାମ ଆରମ୍ଭ କରିଦିଅ । ଆଉ ଖବରଦାର, ଓଡ଼ିଶାରେ ଚିରସ୍ଥାୟୀ Settlement ଯେପରି ନଚଳାଅ ।

୧ମ—That's the instruction of our Board of Directors; କିନ୍ତୁ କେତେକ ଲୋକ ବେଙ୍ଗଲପରି ଏଠି ବ permanent settlement ଲାଗି recommend କରୁଛନ୍ତି ।

୩ସ୍ୱ—Right be—କିନ୍ତୁ ଉଚିତ ହେବ ନାହିଁ ବର୍ତ୍ତମାନ ।

୨ସ୍ୱ—ନହେଲେ ପ୍ରଜାମାନଙ୍କର କଅଣ ଅବସ୍ଥା ହୁଏ—ଦେଖନ୍ତୁ ।

୨ସ୍ୱ—(ଜୋର୍‌ରେ ହସିଲେ) Too ! damn it, dictation of policyକୁ ମାନିବାକୁ ହେବ । ପ୍ରଜା ! ପ୍ରଜା !

(ଜଣେ ପତ୍ରବାହକ ଆସି ଖଣ୍ଡେ ପତ୍ର ଦେଲା ପ୍ରଥମକୁ)

୧ମ—(ଚିଠି ପଢ଼ି) Look here. ଫିପିଲିରେ ଦେଶୀ ପାଇକମାନେ ଗୋଳମାଳ begin କରିଦେଲେଣି । ଗୋଟାଏ ଗାଆଁ ଲୁଟ୍ କରିଛନ୍ତି—

୧ସ୍ତ—I think ରଜା ମୁକୁନ୍ଦଦେବ ଏ ଗୋଲମାଲ ମୂଳରେ ଅଛନ୍ତି । ସୁଢ଼ୀ ମଧର ଆମ ହାତକୁ ନେବାରୁ ଏ ସବୁ ଗଣ୍ଡଗୋଳ ଘଟୁଛି । ମରହଟ୍ଟା-ମାନଙ୍କ ସଲହା କି ଥାଇପାରେ ?

୩ସ୍ତ—Correct; correct । ଆଚ୍ଛା, let us see.

୪ମ—No, ବିଳମ୍ବ ଆଉ ଉଚିତ୍ ନୁହେଁ । ସଙ୍ଗେ ସଙ୍ଗେ ଖୋରଧା ଦୁର୍ଗ ଅବରୋଧ କରାଯାଉ । ମୁକୁନ୍ଦଦେବଙ୍କୁ ବନ୍ଦୀକରି ଆଣ । ଓଡ଼ିଶା ଲୋକେ ତାଙ୍କୁ ଖୁବ୍ ଖାତର କରନ୍ତି । ସେ ଦବିଗଲେ ଗୋଲମାଲ ସବୁ ବନ୍ଦ ହୋଇଯିବ ।

୩ସ୍ତ—Let us now start without any further delay— ଆଉ ବିଳମ୍ବ ନ କରି ବର୍ତ୍ତମାନ କାମ ସୁରୁକର । ଟୁଉଣୀକି ଚାଲ ।

୧ସ୍ତ—All right.

(ସମସ୍ତେ ଆସନ ତ୍ୟାଗକରି ଉଠିଲେ)



## ଚତୁର୍ଥ ଦୃଶ୍ୟ

(ବାରବାଟୀ କଲ୍ଲା ସମ୍ମୁଖସ୍ଥ ପଥ—ଜଣେ ଗୋରା କର୍ମଚାରୀ ଓ ଜଣେ ଦେଶୀ ଲୋକ କଥାବାର୍ତ୍ତା ହେଉଥିଲେ ।)

ଗୋରା—Unnecessary ଏତେ ବଡ଼ ପାଚେରୀ । ଦର୍କାର କଅଣ ? ଆଉ ତ ଶତ୍ରୁ ଆକ୍ରମଣର ଆଶଙ୍କା ନାହିଁ । ଓଡ଼ିଶା କାହିଁକି, ବର୍ତ୍ତମାନ ଭାରତର ପ୍ରାୟ ଚାରିଆଡ଼େ କମ୍ପାନୀ ବାହାଦୂରଙ୍କ ଶାନ୍ତିର ରାଜତ୍ୱ । କଲ୍ଲା ଭିତରେ ଦର୍କାର ପଡ଼ୁଛି ବହୁତ ଘର ବାଡ଼ି । ପଥର ବହୁତ ଅଛି— କାମ କର ।

ଦେଶୀ—(ଚମକି) ପଥର କାହିଁ ସାହେବ ?

ସାହେବ—ଏଇତ, ପାଚେରୀ ଭାଙ୍ଗି ପଥର ବାହାର କଲେ ହେଲା । ଦିଶୁ ନାହିଁ ? ଏଠି ଗୋଟାଏ କ୍ଲବ ଘର ଗ୍ଭହ । ଆଗେ ସେଇଟା ତିଆରି କରାଅ । କୁଲି ଦେଖ କୁଲି । କାଲି ଯେମିତି କାମ ଆରମ୍ଭ ହୁଏ । ବୁଝିଲ, କାଲି—କାଲି ।

ଦେଶୀ—ହଜୁର ହଁ ।

ସାହେବ—Yes, ଆଗେ ପଥର ସବୁ ଠିକ୍‌କରି ରଖ । ପାଚେରି ପାଖ ପାଖ କରି ରଖିଦିଅ । ଭାଙ୍ଗି ତ ଯାଉଛି—ଆଉ ମରାମତି କରିବା ଦରକାର ନାହିଁ ।

ଦେଶୀ—ହଜୁର ।

ସାହେବ—ଜଲ୍‌ଦି କର (ପାଙ୍କିରେ ହୁଇସିଲ ବଜାଇ ବେତ ବୁଲାଇ ବୁଲାଇ ଗ୍ଲୁଲାଗଲେ —ଦେଶୀ ଲୋକଟି ପାଚେରି ଆଡ଼କୁ ନୀରବରେ ଚାହିଁ ରହିଲା କିଛି ସମୟ । ତା ପରେ କାନରେ ଲୁହ ପୋଛି କହିଲା—)

ଦେଶୀ—ଜଗନ୍ନାଥ ! ଏଇଆ ଥିଲା ତମର ଇଚ୍ଛା ? ବଡ଼ ଦେଉଳରେ ତମ ନୀଳକାନ୍ତ ଚୁଟିଲେ ଫିରିଙ୍ଗି ? ଦେଶମାଟି ହେଲା ସାଇବର ? ଶେଷକୁ ବାରବାଟୀ··· ଓଡ଼ିଶା ରଜାଙ୍କର ଏଡ଼େ ବଡ଼ କୀର୍ତ୍ତି ! ସେ ଭଙ୍ଗା ହୋଇ ତୋଳାହେବ ସାଇବଙ୍କ ଖେଳଘର । ହଉ, ଇଚ୍ଛାମୟ ତ ତୁମେ, କଅଣ କରୁଛ କର । ଏଇ ଆଖିରେ ଏ ନୁରାକ ଦେଖିବା ଆଗରୁ ପ୍ରଭୁ ଆମର ମରଣ ହେଇଯାଉ ।

(ଅନ୍ୟ ଜଣେ ନଗରବାସୀ ପ୍ରବେଶ)

ନଗରବାସୀ—କିଓ ମହାପାତ୍ରେ ! ଏଠି ଏକୁଟିଆରେ କଅଣ କରୁଛ ହେ ?

ଦେଶୀ—କଣ ଆଉ କରିବା ଦାସେ ? ଭାବୁଛି ଆମକୁ ମରଣ ହେଉ ନାହିଁ କାହିଁକି ? ଏତେ ଲୋକ ମଲେ—

ନଗରବାସୀ—କିଏ, ଏ କଥା କାହିଁକି କହୁଚ ତୁମେ ?

ଦେଶୀ—କଅଣ ଆଉ ? ରାଜ୍ୟ ଗଲା, ଧନ ଗଲା, ମାନ ଗଲା—ଦଅଁ ଦେଉଳ ଗଲା । ଶେଷକୁ ଆମର କୀର୍ତ୍ତି ଯାହା ଥିଲା, ସେ ବି ଯାଉଛି । ଶୁଣିଚ—ଏ ମେଘନାଦ ପାଚେରି ଭଙ୍ଗା ହେଉଛି ।

ନଗର—ଏଁ ? (ଚମକି)

ଦେଶୀ—ଏଁ କଅଣ ଆଉ ? କାଲି ଏତେବେଳକୁ ଦେଖିବ ଶହ ଶହ ଲୋକ ଲାଗି ଏ ପାଚେରି ଭାଙ୍ଗୁଥିବେ । କୁମ୍ପାନୀ ଘର ହୁକୁମ ।

ନଗର—କାହିଁକି ? ଏଇଟା କଅଣ ଅଡ଼ୁଆ କରୁଛି ତାଙ୍କୁ ? ଓଲଟି ମରାମତି ହୁଅନ୍ତା ପିନା ।

ଦେଶୀ—ମରାମତି କି ଦରକାର ? ତାଙ୍କୁ କଅଣ ଆଉ ଶତ୍ରୁ ଡ଼ର ଅଛି ? ଗୋଟି ଫଟା ହୋଇ ପଡ଼ିଥିଁ ତ ମାଇଲା ମୂଷା ହେଲେ, ଏ ପଥର ପାଚେରି ଭଙ୍ଗା ହେଲେ ସାଇବଙ୍କ ଖେଳଘର, ନାଚଘର ତିଆରି ହେବ । ଜାଣିଲ ?

ନଗର—ହଉ । ଆରେ ସ୍ନେ—ଯେତେବେଳେ ଯିଏ । ଆସ, ଆଉ ଭାବିଲେ କଅଣ ହେବ ?

ଦେଶୀ—ନାଃ, ଯାଏଁ, ଭୁଲ ଦେଖିବ । ବାକ ସ୍ୱା ଦେହରେ ଗ୍ରେଟ ମାରିବାକୁ ଯତ ବଳ୍ପ ନାହିଁ ଜାଣିଲ ଭାଇ !

ନଗର—ଛାଡ଼ । ଗ୍ରେଟ ଆଉ କେଉଁଠି ବାଜ ନାହିଁ ଯେ—ଏଇ ପଥର ଦେହରେ ବାଜିବାକୁ ବାକ ଅଛ ? ମଣିଷର ଦେହ, ମନ ସବୁଥିରେ ତ ଗ୍ରେଟ ମିଶି ସଣଛି । ମଡ଼ା ତ ଆମେ ଗ୍ରେଟକୁ ଡର କଅଣ ? ଗ୍ଲ ଗ୍ଲ—ଲୁହ ଝରେଇ ଲଭ କଅଣ ? ରକ୍ତ ଥିଲେ ପିନା ହୁଅନ୍ତା !

ଦେଶୀ—(ଦୀର୍ଘ ନିଶ୍ୱାସ ପକାଇ) ହଁ, ଯାହା କହୁଲ ଭାଇ । ଅରଣ୍ୟ ରୋଦନ ସେ—

(ଦୁହେଁ ଗ୍ଲଗଲେ)

## ପଞ୍ଚମ ଦୃଶ୍ୟ

(ବାରବାଟୀ ଦୁର୍ଗ । ଦୁଇଜଣ ଗୋରା ଉଚ୍ଚ ପଦସ୍ଥ ଅଫିସର, ସଜ୍ଜିତ କଟେଷ୍ଟ ରେ ବସି କଥାବାର୍ତ୍ତା ହେଉଥିଲେ । ଜଣକ ହାତରେ ଖଣ୍ଡିଏ ପତ୍ର । ଦୁହେଁ ବିବ୍ରତ ହେବାଭଳି ଜଣା ପଡ଼ୁଥାନ୍ତି । )

୧ମ—Well, this is major Flacther. ହଠାତ୍ କଛ ନ ବୁଝି ନ ଶୁଣି ପାଇକମାନଙ୍କ ଜାଗୁରିଗ୍ରା ଜମିଦାରୁ ଛଡ଼ାଇନେବା ଉଚିତ୍ ହୋଇ ନାହିଁ । ଲୋକେ ଖାଇବାକୁ ନ ପାଇ ଏଭଳି ବିଦ୍ରୋହ ସୁରୁ କରିଛନ୍ତି perhaps ।

୨ୟ—Mr. Malviଙ୍କ କଥା ଶୁଣିଥିଲେ ସମ୍ଭବତଃ ଏ ଗୋଳମାଳ ମୂଳରୁ ହୋଇ-ନ ଥାନ୍ତା । ଆଜଉ ଏ ଖବର ଯାହା ମିଳୁଛି ସେ ତ ସନ୍ତୋଷଜନକ ନୁହେଁ ।

୧ମ—ସନ୍ତୋଷଜନକ ନୁହେଁ ବୋଲି କ'ଣ କହୁଛନ୍ତି । ବରଂ ମୁଁ କହିବ ଏ ବିପଦ ସଙ୍କେତ—Dange signal, unpeaceful news.
(ଜଣେ ସିପାହୀ ଆସି ସମ୍ମାନ ଦେଖାଇ ପତ୍ରଦେଲା—ପ୍ରଥମ ବ୍ୟକ୍ତି ପଢ଼ି ପଢ଼ି କହିଲେ)

୧ମ—ଯାଓ, ବାହାର ଠେଁରେ । (ସିପାହୀ ଗ୍ଲଗଲା) Look here । ଆଉ ଏକ ଖରାପ ସମ୍ବାଦ । ଖୋରଧା ଖଜଣାଖାନା ଲୁଟ୍ ହୋଇଗଲା । ପ୍ରତ୍ୟେକ ଗ୍ରାମରେ ଲୋକ ମେଳ ବାନ୍ଧୁଛନ୍ତି । ବକ୍ସି ସେମାନଙ୍କ ନେତା ହୋଇଛନ୍ତି ।

(ଆଉ ଜଣେ ସିପାହୀ ଆସିଲା)

୧ମ—What ?

ସିପାହୀ—ଖୋରଧାକୁ ଯାଇଥିବା ଫୌଜ ଗଙ୍ଗାପଡ଼ା ଟପିପାରିଲେ ନାହିଁ । କର୍ଣ୍ଣେଲ ସାହେବ ହାଣ ଖାଇଲେ । ମାଲମତା ସବୁ ପାଇକଙ୍କ ହାତରେ । ଅନ୍ୟମାନେ କଟକ ପଳାଇ ଆସିଛନ୍ତି । ସେମାନେ ଦେଖା କରିବାକୁ ଚାହାନ୍ତି ।

୧ମ—ଓଡ଼ିଶାର ଚାରିଆଡ଼େ ବିଦ୍ରୋହର ଅଗ୍ନି । ଆଚ୍ଛା, ପୁରୀ ଖବର କିଛି ଜଣାଅଛି ?

ସିପାହୀ—ଶୁଣିଲି ଆମର ଫୌଜ ସେଠି ମଧ୍ୟ ହାରି ଯାଇଛନ୍ତି । ପଣ୍ଡାମାନେ ରଜା ମୁକୁନ୍ଦଦେବଙ୍କୁ ପୁଣି ରଜା ମାନି ନେଇଛନ୍ତି । ଗଙ୍ଗପଡ଼ା ଆଉ ପିପିଲିର ଫୌଜ ଆସି ବାହାରେ ଅପେକ୍ଷା କରିଛନ୍ତି । ଦେଖାହେଲେ ସବୁ କଥା ଜଣାପଡ଼ିବ ।

୧ମ—Well, ଚାଲ—ମୁଁ ସେଠାକୁ ଯିବି ।

(ଦ୍ୱିତୀୟ ସହ ଆସନ ତ୍ୟାଗ କଲେ—ଘଣ୍ଟାଧ୍ୱନି ଶୁଭିଲା)

୨ୟ—What is again ? danger signal.

—ପଟକ୍ଷେପ—

# ଷଷ୍ଠ ଅଙ୍କ

## ପ୍ରଥମ ଦୃଶ୍ୟ

(କୃଷ୍ଣ ଚତୁର୍ଦ୍ଦଶୀ ରାତ୍ରିର ତୃତୀୟ ପ୍ରହର ଅତୀତ ପ୍ରାୟ । ଜୀର୍ଣ୍ଣଶୀର୍ଣ୍ଣବେଶୀ କୃତାଞ୍ଜଳି ନାରୀ ରୂପରେ ଦଣ୍ଡାୟମାନା । ତାଙ୍କ କଣ୍ଠରୁ ବିଷାଦ ସଙ୍ଗୀତ ଶୁଭୁଛି । ଚତୁର୍ଦ୍ଦିଗ ନୀରବ, ସମ୍ମୁଖରେ ଭଗ୍ନ ଶରୀର ବାରବାଟୀ ଦୁର୍ଗର ପ୍ରାଚୀର ତୋରଣ । ଆକାଶରେ କ୍ଷୀଣ ଚନ୍ଦ୍ରାଲୋକରେ ନାରୀ ମୂର୍ତ୍ତି ଅସ୍ପଷ୍ଟ)

( ଗୀତ )

ଭଗବାନ ! ଏଇ ଥିଲା ଲେଖା ଭାଲେ । ୦ ।
କିବା ଅପରାଧେ ଅପରାଧିନୀ ମୁଁ
କହ ତବ ପାଦ ତଳେ । ୧ ।
ଶରତ ଜହ୍ନରେ ବକ୍ଷେ ମୋହର
ଖେଳୁଥିଲା ଫୁଟା କୁମୁଦ ଦୋଳି,
ଉଷାର ଅରୁଣ ହୋଇ ଖେଳୁଥିଲା
ଜଳ କୋଳେ ମୋର ଅମ୍ବର ବୋଳି ।
ମତ୍ତ ଭ୍ରମର—ଚୁମ୍ବି କମଳ
ଗୁଣୁ ଗୁଞ୍ଜୁ ଥିଲା ଗେଲେ ।୨।
ଅଶ୍ରୁ ହୋଇ ମୋର, ତନୁ ଯାଏ ତର ।
ପଖାଳା ରୂପେ ମୁଁ ଥିଲି ଗଡ଼ ଘେର ।
ଗୁରୁ ଗାଁଶପର ଖରାହନ ଶେଷେ
ପ୍ରମୋଦ ତରଣୀ ଯେବେ ଅଙ୍କେ ହସେ
ରାଜପୁର ବାଳା
ରଚି ଜଳ ଖେଳା
ହେମ ତନୁ ରଙ୍ଗେ ଢାଳେ । ୩ ।
ପାଇକ ପୁଅର ଶୁନ ଚରମରା
ଆଖି ଆଗେ ନାଚେ ଆଜି ।
କିଏ ବା ଅଥଳ ଜଳେ ବୁଡ଼ା ମାରେ
ପଙ୍କ ପାଇଁ ରଖି ବାଜି ।
ସେହି ଗଡ଼ଖାଇ,
ତଳେ ନୀର ନାହିଁ
ଲେଖା ହେଲା ଛାର ଭାଲେ । ୪ ।

(ପ୍ରାଚୀରର ଭଗ୍ନ ତୋରଣରୁ ବାହାରିଲେ କ୍ଷତ ବିକ୍ଷତାଙ୍ଗ ଦୁର୍ଗଧାରଣ । ସେ ଆସି ନାରୀ ମୂର୍ତ୍ତି ସମ୍ମୁଖରେ ଦଣ୍ଡାୟମାନ ହୋଇ କିଛିକ୍ଷଣ ଚତୁର୍ଦ୍ଦିଗ ନିରୀକ୍ଷଣ କଲାପରେ କହିଲେ—)

ଦୁର୍ଗଧାରଣ—ଦେବୀ !

ନାରୀମୂର୍ତ୍ତି—କିଏ ? ଓ···ଦୁର୍ଗଧାରଣ । ଆପଣଙ୍କର ଏଇ ଅବସ୍ଥା ? କାହିଁ ସେ ପୁଷ୍ଟ ସବଳ ବପୁ, ସେ ଉଦ୍ଦାମ ଯୌବନର ପ୍ରଫୁଲ୍ଲତା । ସେ ବଳିଷ୍ଠ ବାହୁ, ସେ ଗର୍ବିତ ସ୍ଫୀତ ବକ୍ଷ । କ୍ଷତ ବିକ୍ଷତ ଅଙ୍ଗ ନେଇ ଆପଣ ଆହୁରି ଜୀବିତ ଅଛନ୍ତି ?

ଦୁର୍ଗ—ଠିକ୍ ତମର ପରି ଦେବୀ ! (ତୋରଣ ଆଡ଼କୁ ଚାହିଁ) ଗୃହିଁ ଦେଖ ! ଅବଧି ଏଯାକେ ରହିଛି ମୋର ଶରୀରର ବାକି ଅଂଶ । ଏହାରି ଭିତରେ ବାଧ ହୋଇ ଜୀଇ ରହିଛି । ଖଣ୍ଡ ଖଣ୍ଡ ହୋଇ ତନୁ ମୋର ଗୋରାମାନଙ୍କର ନାଚ ଘର, ଖେଳଘର, ବିନୋଦଶାଳାରେ ଉପଯୋଗ ହୋଇଛି । କୁଟୀଳ, କ୍ରୁର, କପଟ ବିଗ୍ରୁର ଶୁଣି ଶୁଣି ଏ ଅର୍ଦ୍ଧ-ମୃତର କାନ ବଧିର ହେଲାଣି ଦେବୀ ! ବୃଝିପାରୁ ନାହିଁ କାହିଁକି ସେ ପ୍ରଭୁ ମୋର ମସ୍ତକଟି ଜିଆଇ ରଖିଛନ୍ତି ? କାହିଁକି ମୋର ମରଣ ଘଟୁ ନାହିଁ । କେତେ ଟାଣ ଏ ନିର୍ଲଜ୍ଜ ଜୀବନ ମୋର ! କେବେ ଏହାର ଶେଷ ଚିହ୍ନ ଧୂଳିରେ ମିଶିବ—ତାହାରି ଅପେକ୍ଷା ମାତ୍ର ।

ନାରୀ—ଆପଣ ମୋର ଅଗ୍ରଜ-ମୁଁ ସେବିକା ମାତ୍ର । ଆପଣଙ୍କ ରକ୍ଷାର ଭାର ବହନ କରି ଆନନ୍ଦରେ କାଳ ଯାପନ କରୁଥିଲି । ଆପଣଙ୍କ ଆଖି ଆଗରେ ମୋର ଜନ୍ମ । ଏଇ ଅବସ୍ଥା ମୋର ଆଜି । ଗଭୀର ବକ୍ଷ ମୋର ଧୂଳି ଧୂସରିତ । ତହିଁରେ ବିଦେଶୀ ବଣିକ ଶାସକ ମହଲରେ ବିଗ୍ରୁର ହେଉଛି ମୋ ବକ୍ଷରେ ହଳକରି କିଆରି ତିଆରି କରିବା ପାଇଁ । ଅଗ୍ରଜ ! କି ଅପରାଧ କରିଥିଲେ ଜଗନ୍ନାଥଙ୍କ ଚରଣରେ ? କାହିଁକି ଏ ଦଣ୍ଡ ବୁଝିପାରୁ ନାହିଁ । ଆଉ ସମ୍ଭାଳି ନପାରି ମନ ଦୁଃଖ ମହାଶୂନ୍ୟର ପବନରେ ନିବେଦନ କରୁଥିଲି । ଏହାର କଣ ଅନ୍ତ ନାହିଁ ?

ଦୁର୍ଗ—ଅନ୍ତ ? (ଉପରକୁ ଚାହିଁ) ଅନନ୍ତ ଜାଣେ ଏହାର ଅନ୍ତ କେଉଁଠି । ମୁଁ କିନ୍ତୁ ମରଣର ପବିତ୍ର ସ୍ପର୍ଶ ଅପେକ୍ଷା କରି ରହିଛି । ପ୍ରତି ମୁହୂର୍ତ୍ତରେ ସେହି ପ୍ରାର୍ଥନା ମୋର । ମଧ୍ୟେ ମଧ୍ୟେ ଜଣେ ଜଣେ ଅଭାଗ୍ୟର ସହି ନପାରି ମଥା ଟେକୁଛନ୍ତି । କିନ୍ତୁ କଠୋର ବିଦେଶୀ ଶାସନ ତାଙ୍କ ମଥାରେ ବଜ୍ରାଘାତ କରୁଛି । ଆଖି ଆଗରେ କେତେ ଦେଶ-ପ୍ରାଣ, ନିରପରାଧ ପ୍ରାଣଦଣ୍ଡରେ ଦଣ୍ଡିତ ହେଲେ । ଓଃ ସେ କି ବିଭତ୍ସ ଦୃଶ୍ୟ ! ପଥର ଛାତି ମୋର ଶତଧା ବିଦୀର୍ଣ୍ଣ ହୋଇ

ଯାଉଛୁ ଦେବ ! କୃଷ୍ଣୀଠର ବକ୍ଷର ପ୍ରତଦନ ପ୍ରତ ମୁହୂର୍ତ୍ତରେ ଚ୍ଚଲଛୁ । ପ୍ରମୋଦଶାଳରେ ବଳାଓସ୍ତ ଦ୍ରୁକ୍ତିବ । ମଦ୍ୟ ମାଂସର ଅବାଧ ଗ୍ରଜତ୍ୱ । ହୀନ କପଟ ମନ୍ତ୍ରଣା ! ( ଦୂରରୁ ତୂର୍ଯ୍ୟନାଦ ଶୁଭଲା ।) ଏଇ ଶୁଣ ! ସେନା-ଗ୍ରହଣୀରୁ ବଳାଓସ୍ତ ତୂର୍ଯ୍ୟନାଦ ପ୍ରତସ୍ପତ ହେଲ—ଆଜ ସନ୍ଧ୍ୟାରେ ଏସ୍ଥଠାରେ ସାକ୍ଷାତ କଲେ, ସେ ପ୍ରମୋଦଶାଳାର ରଙ୍ଗ ଢ଼ଙ୍ଗ ଦେଖି ଆସିବ । ଗ୍ଲଲ ଶୀଘ୍ର ଆତ୍ମଗୋପନ କରନେବା ।

(ଘନ ଘନ ତୂର୍ଯ୍ୟନାଦ)

●

## ଦ୍ୱିତୀୟ ଦୃଶ୍ୟ

(ରାଜପଥ । କେତେକ ସ୍ତ୍ରୀ ଓ ପୁରୁଷ ହାତରେ ଲୁଣ ପୁଡ଼ା ବାନ୍ଧ ଅସୁଥିଲେ)

ଜନତା—"ମହାତ୍ମା ଗାନ୍ଧୀ ଙ୍କ —ଜୟ", "ଉତ୍କଳମଣି ଗୋପବନ୍ଧୁ ଙ୍କ ଜୟ" "ସ୍ୱାଧୀନ ଭାରତ କି—ଜୟ ।"

(ବିପରୀତ ଦିଗରୁ ଜଣେ ଗୋରା ସର୍ଜେଣ୍ଟ ଓ କେତେଜଣ ଦେଶୀ କନେଷ୍ଟବଲ ପ୍ରବେଶ କଲେ)

ସର୍ଜେଣ୍ଟ—ଏ···ହାଲ୍ଲା ବନ୍ଦ କର ।

ଜନତା—"ମହାତ୍ମାଗାନ୍ଧୀ ଙ୍କ —ଜୟ"

ସର୍ଜେଣ୍ଟ—(ପଥରୋଧ କରି) ଠେରୋ, ଚୂପ୍ କରୋ ।

ଜନତା—(ପୂର୍ବପରି ଜୟଧ୍ୱନି)

ସର୍ଜେଣ୍ଟ—(ହାତକୁ ଠାରି) ଓ ସବ୍ କ୍ୟା ହେ ?

ଜନତା—ଲୁଣ ।

ସର୍ଜେଣ୍ଟ—ଗ୍ରେଡ଼ୋ ଫିଙ୍ଗୋ ଉପ୍‌କୋ । ନହିଁ ତୋ—

ଜନତା—କାହିଁକି ? ଆମର ଲୁଣ ଆମ ଘରଆରୁ ମାରନ୍ତୁ । ଫୋପାଡ଼ିବୁ କାହିଁକି ?

ସର୍ଜେଣ୍ଟ—ସିପାହି !

ସିପାହି—ହଜୁର !

ସର୍ଜେଣ୍ଟ—ଜବରଦସ୍ତ ଛିନ୍ ଲୋ !

ଜନତା ଭିତରୁ ଜଣେ—(ଆଗେଇ ଆସି) ନାହିଁ ଆମେ ଛାଡ଼ିବୁ ନାହିଁ ।

ସର୍ଜେଣ୍ଟ— (ଭିତରେ ଚିହ୍ନି) ଗ୍ରେଡ଼ୋ ।

ଜନତା—"ଜୟ ମହାତ୍ମା ଗାନ୍ଧୀ କି—ଜୟ"

ସର୍ଜେଣ୍ଟ—ସିପାହୀ ! ଚଲାଓ ବେତ୍ । ଲେ ଚଲୋ ପୋଲିସ ଷ୍ଟେସନକୋ ।

ଜଣେ ଜନତା—କେତେଜଣଙ୍କୁ ମାଡ଼ ଦେଇ ମୁଠାଏ ମୁଠାଏ ଲୁଣ ଛଡ଼ାଇନେଲେ ସାରା ଦେଶ ଶୋଇ ପଡ଼ିବ ନାହିଁ ସର୍ଜେଣ୍ଟ ! ଜାତିର ନିଦ ଭାଙ୍ଗିଛି । କେତେଦିନ ନିଶ୍ଚୁପ ଜନତା ତୁମର ଅତ୍ୟାଚାର ସହିବ ? ଆମର ଦେଶ, ଆମର ଗାଆଁ—ଆମର ଭୂଇଁ । ତୁମେ ଆସି ଗୁରୁ ମୁଠାଏ ଲୁଣ ମାରି ଖାଇବାରେ ବାଧା ଦେବ ? ବେତରେ ଶାସନ କରିବାର କାଳ ଚାଲି ଯାଇଛି । ଥାନାକୁ ନେବ—ଚାଲ ! ମାଡ଼ ଦେବ—ଦିଅ । ଜେଲ୍, ଫାଶୀଖୁଣ୍ଟ, ଆମେ ଆଦରରେ ବରଣ କରିବୁ । ଆମ ଦେଶକୁ ଆମେ ସ୍ୱାଧୀନ କରାଇବୁ । ବୋଲ ଭାଇ "ମହାତ୍ମା ଗାନ୍ଧି କି—ଜୟ" "ଭାରତ ମାତା କି—ଜୟ" ।

ସର୍ଜେଣ୍ଟ—ସିପାହୀଓ ! କ୍ୟାଁ ତକାତିଓ ? ଚଲାଓ ଲାଠି । ଥାନାକୁ ଲେଯାଓ ।

ସିପାହୀ—ଚାଲନ୍ତୁ ସବୁ । ଭଲରେ ନ ଗଲେ ସାଇବର ହୁକୁମ—ଲାଠି ଚାଲିବ ।

ଜଣେ କର୍ମୀ—ସିପାହୀ ଭାଇ ! ଆମ୍ଭେମାନେ ତ ତୁମ ଦେଶର ଲୋକ—ତମର ପୁଅ ଭାଇ । ତମର ମା ଭଉଣୀ । ଆମରି ଲୁଣରେ, ଗୋରା ଆମକୁ ଶାସନ କରୁନ୍ତି । ଗୁଡ଼ିଏ ଭାଇ ପରର ଏ ଗୋଲାମୀ । ଆସ, ଆମ ସାଙ୍ଗରେ ସମସ୍ତେ ମିଶିଯାଅ । ଏକା ଦିନକେ ଭୁଆଡ଼େ ଏମାନେ ଦେଶ ଛାଡ଼ି ଚାଲିସିବେ ।

ସର୍ଜେଣ୍ଟ—(ନିଜେ ବେତ ମାରି) କ୍ୟା ବୋଲ୍ତା ? ଚଲାଓ ସିପାହୀ ! ପକଡ଼କେ ଲେ ଚଲୋ ।

(ଜନତା ପୁନଃପର ଜୟଧ୍ୱନି କଲେ—ସିପାହୀ ସେମାନଙ୍କୁ ଠେଲି ଠେଲି ନେଇଗଲେ ।)

●

## ତୃତୀୟ ଦୃଶ୍ୟ

(କଟକ କ୍ଲବ ଘର—**Ball dance** ହେଉଥିଲା । କେତେ ଜଣ ଗୋରା ଅଫିସରଙ୍କ ସମ୍ମୁଖରେ । ଟେବୁଲ ଉପରେ ଥୁଆ ହୋଇଛି ମଦ ଗ୍ଲାସ୍—ଟିକିଏ ଦୂରରେ ଖାନସାମା ଟ୍ରେରେ ଗ୍ଲାସ ଧରି ଛିଡ଼ା ହୋଇଛି । ଅଟ୍ଟହାସ୍ୟ ମଧ୍ୟରେ ପର୍ଦ୍ଦା ଉତ୍ତୋଳନ ହେଲା । ନୃତ୍ୟ ଧୀରେ ଧୀରେ ବନ୍ଦ ହେଲା—ଜଣେ ନର୍ତ୍ତକୀକୁ ଖୁବ୍ ପସନ୍ଦ କରି କହିଲା—)

ଜଣେ ଗୋରା—**Splendeed!**

୨ସ୍ବ   Really charming !

(ଆସି ପହଞ୍ଚିଲେ ସର୍ଜେଣ୍ଟ—ପରସ୍ପର ଅଭିବାଦନ କରି ଆସନ ଗ୍ରହଣ କଲେ)

୧ମ—ମିସେସ୍ ମନ୍‌ରୋଙ୍କ dance ଦେଖିପାରିଲ ନାହିଁ ସର୍ଜେଣ୍ଟ । Really enjoymentର ଜିନିଷ । ଆପଣ chance ହରାଇଲେ Mr. Belli.

ସର୍ଜେଣ୍ଟ—Helpless ! Non-co-opration movement ବଡ଼ ଜୋରସୋର ଚଲାଇଛନ୍ତି ଘୁଡ଼ାଏ ଲୋକ । ଲୁଣ ମାରି, ଗାନ୍ଧୀ ଜୟ ଗାଇ ବଡ଼ ବିପ୍ଳବ ଆରମ୍ଭ କରିଦେଇଛନ୍ତି ।

୩ସ୍ବ—Foo ! ଏଇ ଦଳକୁ ଆପଣ ଡର ଯାଉଛନ୍ତି Mr. Belli ?

ସର୍ଜେଣ୍ଟ—Oh no, କିନ୍ତୁ ଗୋଳମାଳଟାକୁ ବଢ଼ିବାକୁ ଦେବାଟା ଠିକ୍ ନୁହେଁ । ଆରେଷ୍ଟ ଚାଲିଛି । ତାଙ୍କ ନେତାମାନଙ୍କୁ ଧରି ଜେଲ୍‌ରେ ଠୁଙ୍କି ଦେଲେ ଅଣ୍ଡା ହୋଇଯିବେ ।

୨ସ୍ବ—Here is the power. (କଳା ଲୋକଙ୍କୁ ଦେଖାଇ) ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ ହିସାବରେ ତାଙ୍କର କର୍ତ୍ତବ୍ୟ ସେ ନିଶ୍ଚୟ କରିବେ । Let those beggars stand for a trial.

ମାଜିଷ୍ଟ୍ରେଟ   Already ମୋର ତ special instruction ଅଛି । ଅନିର୍ଦ୍ଦିଷ୍ଟ କାଳ ପାଇଁ ସେମାନଙ୍କୁ ଅଟକ ରଖିବାକୁ ହେବ । ବାକୀର କୋର୍ଟ ଉପରେ ନିର୍ଭର କରେ ।

ସର୍ଜେଣ୍ଟ—ଥାନାରେ ସେମାନେ ଆଜି ଦୁଇଟା ଅଟକ ଅଛନ୍ତି । ଖବର ପାଇଲି ଆହୁରି କେତେଟା ଦଳ ଗୋଳମାଳ ପାଇଁ ପ୍ରସ୍ତୁତ ହେଉଛନ୍ତି । କଂଗ୍ରେସ ବୋଲି ଗୋଟାଏ ଅନୁଷ୍ଠାନ ଏମାନଙ୍କ ପିକେଟିଂକୁ ସାହାଯ୍ୟ କରୁଛି । ଆପଣ ଜାଣନ୍ତି ?

ମାଜିଷ୍ଟ୍ରେଟ୍—ହଁ, ସେ ଖବର ବି ମୁଁ ରଖିଛି । ଡେପୁଟି selection ଦିନ କେତେ ଜଣ ଆସି office ବାରଣ୍ଡାରେ ଶୋଇରହି ଲୋକଙ୍କୁ interview ଲାଗି ବାରଣ କରୁଥିଲେ ।

୧ମ—ଏଇ ଧମକରେ ବ୍ରିଟିଶ୍ ପାୱାର ଡରିଯିବ ମନେକରିଛନ୍ତି । ମୂର୍ଖ ଯୁବକ । ଗାନ୍ଧୀ କଥାରେ ମାତିଛନ୍ତି । ଯୁବକ ମରିବେ—ଫଳ ଏଇ ହେବ ତାର ।

ସର୍ଜେଣ୍ଟ—ପୋଲିସ୍ ସ୍ଥାନେ ସ୍ଥାନେ ଗୁଳି ଚଳାଇବାକୁ ବାଧ୍ୟ ହୋଇଛି । ବାଲେଶ୍ୱର ଅଞ୍ଚଳରେ କଜ୍ ଲୋର ସେମାନେ ମେଳି ବାନ୍ଧିଛନ୍ତି । କୋରାପୁଟ ସର ମାଳ ଅଞ୍ଚଳରେ ମଧ୍ୟ ଉତ୍ତେଜନା ବୃଦ୍ଧି ପାଉଛି ।

୨ୟ—Well, ଅନ୍ୟାନ୍ୟ ଗଡ଼ଜାତ ଖବର—

ମାଜିଷ୍ଟ୍ରେଟ—No, no ଆମର ରାଜାମାନେ ଠିକ୍ ଅଛନ୍ତି । ସେମାନେ ଏ ସବୁ ଚାହାନ୍ତି ନାହିଁ । ବରଂ ବ୍ରିଟିଶ୍ ପାୱାର ତାଙ୍କୁ ଶାନ୍ତିରେ ରହିବାକୁ ଅନେକ ସାହାଯ୍ୟ କରନ୍ତି । ସେଠାକାର ଲୋକେ ଗୋଳମାଳ କରିବାର କୌଣସି ଆଶଙ୍କା ନାହିଁ ।

ସର୍ଜେଣ୍ଟ—Still ଢେଙ୍କାନାଳ, ତାଳଚେର ପରି ଷ୍ଟେଟ ଷ୍ଟେଟ ରାଜ୍ୟରେ କେତେକ କଂଗ୍ରେସ କର୍ମୀ ଭୁଲ ଲୋକଙ୍କୁ ମତାଉଥିବାର ଖବର ମିଳିଛି ।

(ଫୋନ୍ ଶବ୍ଦ ଶୁଣାଗଲା)

ସର୍ଜେଣ୍ଟ—(ଉଠି ଯାଇ ଫୋନ୍ ଧରି) Hallow···yes, speaking Surrgent, yes···oh ! My God ! About three hundred ? just coming.

୧ମ—What ?

ସର୍ଜେଣ୍ଟ—Serious. ପ୍ରାୟ ତିନି ଶହ ଲୋକ Police Station ଉପରେ ଆକ୍ରମଣ କରିବାକୁ ଉଦ୍ୟତ । ସେମାନଙ୍କ ଉଦ୍ଦେଶ୍ୟ ଆରେଷ୍ଟ ହୋଇଥିବା ଲୋକଙ୍କୁ ଛଡ଼ାଇ ନେବେ ।

ମାଜିଷ୍ଟ୍ରେଟ୍—(କଥା ଉପରେ) Look here Mr. Belli, reserveରୁ କିଛି armed force ନେଇ ଯାଇ ସଙ୍ଗେ ସଙ୍ଗେ ପ୍ରତିରୋଧ କରନ୍ତୁ । ଆବଶ୍ୟକ ହେଲେ—

(ଖୁବ୍ ଦୂରରୁ ଗାନ୍ଧୀ ଜୟ ଧ୍ୱନି)

ଜସ୍—Wait, wait (କାନେଇଲେ)

ସର୍ଜେଣ୍ଟ—This is I think next batch···

ମାଜିଷ୍ଟ୍ରେଟ୍—Hurry up, Hurry up. କିଛି ଦୟା ନାହିଁ । ଲାଠି ଚାର୍ଜ କର । ଚାଲ, ମୁଁ ବି ବାହାରିଲି Surgent ! ମୋ ସହିତ ସବୁ ସମୟରେ Phone contact ରଖିଥିବ । Driver !

ନେପଥ୍ୟ—Sir !

ମାଜିଷ୍ଟ୍ରେଟ୍—ଗାଡ଼ି ରେଡ଼ି କରୋ ! ବି କୁଇକ୍ !

(ସମସ୍ତେ ଉଠିଲେ)

(ଅଦୂରେ ଦୁଇଟ୍ରଣ୍ଟା ଗାଡ଼ିର ହର୍ଣ୍ଣ ଓ ଚାଲିବା ଶବ୍ଦ ଶୁଭିଲା)



## ଚତୁର୍ଥ ଦୃଶ୍ୟ

(ରାଜପଥ । ଖଦଡ଼ ପୋଷାକ ପିନ୍ଧି କେତେଜଣ ଯୁବକ, ବୃଦ୍ଧ, ମହିଳା ଓ ଛୋଟ ଛୋଟ ବାଳକ ତ୍ରିରଙ୍ଗ ପତାକା ଧରି ଗୀତ ଗାଇ ଚାଲିଥିଲେ)

—ଗୀତ—

ଜାଗ, ଜାଗ, ଜାଗ—
ସୁପ୍ତ ସିଂହ ଜାଗ । ୦ ।
ଘୁମାଇଁ ନ ରହ ବାରବାଟୀ
ଫିଟିଛୁ ତ ଅନ୍ଧ କବାଟି,
ଖାରବେଳ, ଅଶୋକ, କପିଳ ବଂଶଧର
ନଭୁଲ ବିଗତ ଅନୁରାଗ
ଶାନ୍ତି-ମୈତ୍ରୀ-ପ୍ରୀତି ମନ୍ତ୍ରର ଗାଇ
ଶାନ୍ତି ପଥରେ ବର ମାଗ । ୧ ।
କୋଟି ଶିର କର ସମୁଜ୍ଜ୍ୱଳ
ବକ୍ଷୁଁ ରକତ ଦିଅ ଢାଳି
ଏଇ ତ ଆସିଛୁ ତୋର ଅମୃତ ବେଳାରେ
ଏଇ ତ ପୂରୁବେ ରବି ରାଗ ।
ଦରହସା ମାରିଲଣି, ମଙ୍ଗଳ ଲଗନେ
ଉତ୍କଳ ଦଶେ ଦିଗ ଭାଗ । ୨ ।
ଶୁଣ ଶୁଣ ବନ୍ଧୁଙ୍କ କଣ୍ଠେ
ମୁକତିର ଜୟ ଗୀତ ଫୁଟେ
ଅନୁକୂଳ ବହେ ଧୀର ପବନ ପ୍ରଭାତେ
ଏଥି ତ ଜନନୀ ଅନୁରାଗ ।
ଶୁଭ ଆଶିଷ ଘେନ, ବନ୍ଦନୀ ଦେବୀର
ପୋଛୁ ଦିଅ କଳଙ୍କ ଦାଗ । ୩ ।

ସମସ୍ତେ—"ମହାତ୍ମା ଗାନ୍ଧୀ କି—ଜୟ"

(କହି କହି ଚାଲିଗଲେ)

●

## ପଞ୍ଚମ ଦୃଶ୍ୟ

(ଜିଲ୍ଲା ଭିତରର କ୍ଳବ ଘର । ଆଧୁନିକ ସାଜସଜ୍ଜାରେ ଘରଟି ସୁସଜ୍ଜିତ । କାନ୍ଥରେ ଘଣ୍ଟା ଟଙ୍ଗାଯାଇଛି—ପାଞ୍ଚଟା ବାଜିବାକୁ ତିନି ମିନିଟ୍ ବାକି ଅଛି । ଗୋଟିଏ ପାଖରେ ୧୯୪୭ ମସିହାର କ୍ୟାଲେଣ୍ଡର । ଅଗଷ୍ଟ ମାସ ଦେଖା ହୋଇଛି—ଆସିଲା କେୟାର ଟେକର୍—କାନ୍ଧରେ ତାର ଝାଡ଼ଣଟିଏ । ସେ ଆସି ଟେବୁଲ ଓ ଚୌକି ଝାଡ଼ିବାବେଳେ—)

ଝାଡ଼ୁଦାର—(ଝାଡ଼ୁ ଝାଡ଼ୁ ଫେରି ଗୁହିଁ) ସଲାମ, ସଲାମ ଭାଇ ! ଆସିଗଲ ।

କେ. ଟେ.—ହଁ ଭାଇ ସଲାମ୍ । ବେଳ ହୋଇଗଲା ! ଏଇନେ ତ ସାଇବମାନେ ଆସି ପହଞ୍ଚିବେ ।

ଝାଡ଼ୁଦାର—କେଇଟା ବାଜିଲା ?

କେ. ଟେ.—(ଘଡ଼ିକି ଗୁହିଁ) ମଲା, ଯା—ଆଉ ତ ତିନି ମିନିଟ୍ ବାକି ଅଛି ପାଞ୍ଚଟା ବାଜିବାକୁ । ଶୀତଦିନଆ ବେଳ । କୁଆଡ଼େ ଦିନ ପଳେଇ ଯାଉଛି ଅନାଉଁ ଅନାଉଁ ।

ଝାଡ଼ୁଦାର—କଅଣ ଫେରେ ହେଲା କଂଗ୍ରେସ ବାଲାଙ୍କ କଥା ? ସାଇବମାନେ ଆସୁଛନ୍ତି—ଶୁଣୁଥିବ ସେଠିରେ କଥାବାର୍ତ୍ତା ସବୁ । ଆଉ କିଛି ଗଣ୍ଡଗୋଳଆ ନାହିଁ ?

କେ. ଟେ.—ଆରେ ସବୁକଥା ଶୁଣିବାକୁ ଫୁରୁସତ କାହିଁ ? ସ୍ୱା' ଆଣ, ତା'ଆଣ ଫରମାସ ଯୋଗାଇବାକୁ ଧାଉଁ ଧାଉଁ ଗୋଡ଼ ଦି'ଖଣ୍ଡିକୁ ତର ନାହିଁ । କାନରେ କିଛି କିଛି ପଡ଼ୁଛି । ଗଣ୍ଡଗୋଳ ଆଉ କଣ ହେବ ? ଏଇକ୍ଷଣି ସବୁ ତାଙ୍କ ଘରେ ହରିବୋଲ ପଡ଼ୁଛି ।

ଝାଡ଼ୁଦାର—କ'ଣ ପୁଣି ଯିବାର ନା ରହିବାର ?

କେ. ଟେ.—ରଇବାର ନା ସମବାର ? ଘଣ୍ଟା ବାଜିଗଲଣି । ଏଇ ପନ୍ଦର ତାରିଖ ଦିନ ତ ପାର୍ଟି ବଦଳ ।

ଝାଡ଼ୁଦାର—ଏଁ ? ଆଜି କେତେ ତାରିଖ ହେଲା କି ?

କେ. ଟେ.—ଆଜି ? (କ୍ୟାଲେଣ୍ଡରକୁ ଅନାଇ) ଆରେ ରେ ! ଦିନଟେ ଏଇଠି ପଳେଇ ଯାଉଥିଲା । ଆଜି ୧୩ ତାରିଖ ସବୁ । ଦେଖି ଆସିଲି ସାଇବଙ୍କ ଘର ଶୁନଶାନ ଲାଗୁଚି । କିଏ କିଏ ଗଲେଣି ବାହାରି ବୋଧହୁଏ ।

ଝାଡ଼ୁଦାର—ଏତିକିବେଳେ ପହଞ୍ଚିଗଲେ କିଛି ବକ୍‌ସିସ ମିଳିଯିବ ।

କେ. ଟେ.—ହଁ ବକ୍‌ସିସ୍ ! ତାଙ୍କର ତ ପୁଅ ବାହାଘର ହଉଚ—ତତେ ବକ୍‌ସିସ୍ ଦେବେ । ମୁହଁ ଶୁଖି ଦେଖା ପଡ଼ିଗଲଣି । ଗୃର ପାଞ୍ଚଦିନ ହବ ଆଉ କଣ ସେ ଧୂମ୍‌ଧାମ ଖିଆ ପିଆ—ଏ ଜିବରେ ଅଛୁ ? ସବୁ ଖାଲି ଯୋଡ଼ି ଯୋଡ଼ି—ପୁଞ୍ଜି ପୁଞ୍ଜି—ଟୁପ୍ ଟାପ୍, ଫୁସ୍‌ଫାସ୍ ଗୃଲିଛୁ । ପନ୍ଦର ତାରିଖ ବେଳକୁ କେହି ଆମ ଦେଶରେ ନଥିବାପରି ଜଣାପଡ଼ୁଛୁ ।

ଝାଡ଼ୁଦାର—ପୁଣି ତ ଏ ରାଜ୍ୟରେ କିଏ ରାଜା ହେବ ?

କେ. ଟେ.—ଆଉ ରାଜା କଅଣ ? ଜଣେ ତ ନୁହେଁ—ଆମ ସମସ୍ତଙ୍କ ତରଫରୁ ପରା ନେହୁରୁଙ୍କୁ କ୍ଷମତା ଦିଆଗଲା । ସେଇ ଶାସନ ଚଳାଇବେ । ସବୁ ହେଇ-କଣ୍ଟି ତ ଏକା ନାହିଁ ଦ'ଗଡ଼ ହେଲା ବୋଲି ଶୁଣାଯାଉଛୁ । ଫାଳେ ହିନ୍ଦୁ, ଫାଳେ ମୁସଲମାନ ଭୂଇଁକି ଫାଡ଼ିନେବେ । ଆଉ କଣ ସେ ମିଠା ରହିଲା କି ?

ଝାଡ଼ୁଦାର— ସବୁ ସେ ଗୋରାଙ୍କର ଫନ୍ଦି । ଗଲାବେଳକୁ ଗୋଟାଏ କଲି ମଞ୍ଜି ପୋତିଦେଇ ଯାଉଛନ୍ତି । ଅଚ୍ଛା, ଆମ ଗାନ୍ଧିବାଲା ସବୁ ଜିଅଲରୁ ମୁକୁଳିଲେଣି ତ ?

କେ. ଟେ.—ତା ଆଉ ନ ହୁଅନ୍ତା ? କେତେ ପ୍ରକାର କୌଶଳ ଝଞ୍ଜିଲେ ଗୋରାଏ । ଆରେ ଭାଇ, ଇଏତ ଆଉ ଗୁଳିଗୁଳା ଲଢ଼େଇ ନୁହଁ । ଟୋପାଏ ରକ୍ତ ନ ବୋହି ଲଢ଼ିବା କ'ଣ ସୋଜା କଥା ? ଏଇ ଏକା ଗାନ୍ଧୀଙ୍କ ବୁଦ୍ଧି ଅଣ୍ଟା ପଡ଼ୁଛୁ । ସଂସାରରେ ଯୋଉ କଥା ଶୁଣା ନଥିଲା—ସେଇ କଥା ଗାନ୍ଧୀ କରିଛନ୍ତି ।

ଝାଡ଼ୁଦାର—ହଁ, ବୁଢ଼ା ତ ଆସି ମୋହନ ମନ୍ତ୍ର ପଢ଼ିଲା । ସେଇଥିରେ ପୁତା ଛୁଡ଼ ଛୁଡ଼ ଡ଼ାକିଲେଣି । ପଳେଇଲେଣି ଥୋଡ଼ାଏ—ନାହିଁ ?

କେ. ଟେ.—ଆଉ କଅଣ ଅଛନ୍ତି କି ? ଆଗରୁ ତ ଅନେକ ଗୋରା ଆପଣା ବାଟ-କାଟି ଜାହାଜ ଚଢ଼ି ସାରିଲେଣି । ଆଉ କଣ କେତେ କା ଭାଁ କୋଉଠି କେମିତ ସେ ଅଛନ୍ତି—ତାଙ୍କର ଅଉ ଦିନ ଦଶ୍ଟା ମଝିରେ ବାକି ।

ଝାଡ଼ୁଦାର—ହଁ ସେଇଠୁ ? "କେଉଟ—ଯୋଉ ବାଟେ ଆସିଥିଲି ସେଇ ବାଟେ କେଉଟ ।"

କେ. ଟେ.—ଆଉ ଏ ହାକମି ଏ ମଉଜ, ଏ ଖିଆପିଆ ପୁଣି କାହିଁ ଥାଏ ? "ପଥ ସୁମର ପିତା ଘର ଯିବ—ଆଉ ଅଯୋଧ୍ୟାକୁ ମନେ ନ କରିବ ।"

(ମଟର ହର୍ଣ୍ଣ ଶୁଭିଲା)

ଝାଡ଼ୁଦାର—ଭାଇ, ମୁଁ ଯାଉଚି । ହେଇଟି, ଆଇଲେଣି ସବୁ । ଏଇଥର ଚମ ପାଳ ବଡ଼ ବଡ଼ ଘଡ଼ି ୧୨ଟା । ସମ୍ଭାଳ ଏଥର—ଆଇଲେଣି ହାକମମାନେ ।

କେ. ଟେ.—ଆଉ କ ପାଲରେ ? ପାଞ୍ଚ ସାତ ଦିନ ହେବ ଆଉ ସେ ନାଚ ତାମସା ସେ ମଦ ଜଳାଜଳ, ଖେଳ କୌତୁକ ଅଛି କି ! ଆଜି ସ୍ବାକୁ ଧରଆଣ, କାଲି ତାକୁ ଆଗୁଳି ରଖ—କଂଗ୍ରେସ ଲୋକ ଦେଖିଲେ ଜେଲରେ ଭର୍ତ୍ତି କରଦିଅ —ଘଡ଼ି ଅଧିଆ ଜୁମ୍ ଗ୍ରୁପ ମନ୍ତ୍ରଣା—ସବୁ ବନ୍ଦହେଇ ଗଲାଣି । ଏଇନେ ଗାନ୍ଧୀ ଟୋପି ଦେଖିଲେ ସଲାମ ଉଠଉଛନ୍ତି କୋଣକ ବାଟରୁ ।

ନେପଥ୍ୟ—ବୟ !

କେ. ଟେ.—ହଜୁର !

ଝାଡ଼ୁଦାର – ଯା' ଭାଇ ଯା—ଆଉ ଦିନ ଦି'ଟା । ହଜୁରଙ୍କ କଥାକୁ ହାଜର ହଉଥା ।

(ଦୁହେଁ ଦୁଇଆଡ଼େ ଗଲେ)

(ପ୍ରବେଶ କଲେ ଦୁଇଜଣ ଗୋରା—ମୁଖଟି ମଳିନ ପଡ଼ିଯାଇଛି । ଆସି ଦୁଇଖଣ୍ଡ ଚୌକିରେ ବସିପଡ଼ିଲେ)

୧ମ—ବୟ !

ବୟ—ହଜୁର ! (ଦୌଡ଼ି ଆସି ସଲାମ କଲା)

୧ମ—Tea.

ବୟ—ହଜୁର । (ପୁଣି ସଲାମ କରି ଚାଲିଗଲା)

୨ୟ—Today is·····

୧ମ—(Calender କୁ ଆଙ୍ଗୁଳି ନିର୍ଦ୍ଦେଶକରି) 13th.

୨ୟ—(ଆଶ୍ଚର୍ଯ୍ୟ ହୋଇ) 13th ?

୧ମ—Yes, 13th

୨ୟ—(ଆଙ୍ଗୁଳି ଗଣି) 14th.—tomorrow ! a few hours only ?

୧ମ—ଏଟା ଲର୍ଡ଼ ଓ୍ବାଭେଲଙ୍କ ଅଦୂରଦର୍ଶିତାର ପରିଣାମ । ୧୯୪୬ ସେପଟେମ୍ବରରେ ସେଇ ପ୍ରଥମେ ବାଘ ମୁହଁରେ ରକ୍ତ ଚଟାଇ ଶିଖାଇଲେ । He is practically responsible for this. ସେ କାହିଁକି କଂଗ୍ରେସ leaderଙ୍କୁ ଖଲାସ କରିଦେଲେ ? ଅଥଚ ସେଇମାନେ ବର୍ତ୍ତମାନ ମିନିଷ୍ଟ୍ରି ଗଢ଼ିବାକୁ ଯାଉଛନ୍ତି ।

୨ୟ—କ୍ୟାବିନେଟ୍ ମିସନ ତ ସେଇ ବିଗୁର କରିଛନ୍ତି । ସେଇଥିପାଇଁ ଲର୍ଡ଼ ଓ୍ବାଭେଲ ଭାରତର ଶାସନ ଭାର ନେହେରୁଙ୍କ ହାତରେ ଦେବାଲାଗି ଡ଼ାକିଲେ ।

୧ମ – ଠିକ୍ ହୋଇଛୁ, ଏଇକ୍ଷଣି ତ ଭାରତ ଆଉ ଏକ ଶାସନରେ ରହିପାରୁ ନାହିଁ ।
ସେ ପାଖେ ମୁସଲମ ଲିଗ୍ ବ ତା'ର ଭାଗ ଗୁହିଁଲାଣି ।

୨ୟ—(ହସି) ସେଇ ତ ମଜା । ଦୁଇ ଦଳର ସଙ୍ଘର୍ଷ ଭିତରେ ଦେଶର ଲୋକେ କପରି ରହୁଛନ୍ତି ଦେଖ । ଆଉ ଲର୍ଡ଼ ଓ୍ୱାଭେଲଙ୍କ service କେତେକାଳ ତା ମଧ୍ୟ ଦେଖାଯାଉ । (ବୟ ଗ୍ଲ' ନେଇ ଆସିଲା)

୧ମ—ଅଉର କୋଉ ସାହେବ ଲୋକ ନାହିଁ ଆୟା ?

ବୟ—ନାହିଁ ତୋ ହଜୁର !

୨ୟ—Strange !

୧ମ—Well, This is India you know ?

୨ୟ—ଆଚ୍ଛା ଯାଓ, ନାଚ ଘରମେ କୋଇ ହାଏ ତୋ ଦେଖୋ ।

ବୟ—ବହୁତ ଆଚ୍ଛା ହଜୁର ! (ପ୍ରସ୍ଥାନ)

(ଗ୍ଲହା କପ୍‌ରେ ଢ଼ାଳି ପିଇବାକୁ ଧରି)

୧ମ—Well Mr. Duke । ସାୟଦ ନାଚ ଘର ମେ ଓଇ ହାଲତ୍ ।

(ଟେଲିଫୋନ୍ ବାଜିଲା—କେସ୍କାର ଟେକର ଦୌଡ଼ି ଆସି)

କେ. ଟେ.—(ସଲାମ କରି) ଆପ୍‌କା ଫୋନ୍....

୨ୟ—ଫୋନ୍ ? କାହାଁସେ ?

କେ. ଟେ.—ମେମ୍ ସାହେବ ବୁଲାତ ହେ ।

୨ୟ—ଓ...(ଉଠିଲେ)

୧ମ – (ଉଠି) ଗ୍ଲଲ ମୁଁ ବ ଯାଏଁ । ଏକା ଏକା ଭଲ ଲାଗୁ ନାହିଁ ।

(ଉଭୟେ ଗ୍ଲଲଗଲେ)

କେ. ଟେ.—ଆରେ ! ଗ୍ଲ'ଟା ଖାଇଗଲେ ନାହିଁ—ପଳେଇଲେ ?

ବୟ—(ଆସିଲା) ସାହେବ କାହିଁ ?

କେ. ଟେ.—ସେଘରକୁ ଫୋନ୍ ଶୁଣିବାକୁ ଗଲେଣି ଦୁହେଁ ।

ବୟ—ଆଉ ତ କଥଣ ଆଜି କେହି ଆସି ନାହାନ୍ତି ? ନାଚଘରେ ବ କେହି ନାହାନ୍ତି— ଖାଲି ଖାଲି...(ମଟର ହର୍ଣ୍ଣ ଶୁଭିଲା)

କେ. ଟେ.—ଦେଖିଲୁ ଦେଖିଲୁ, ଗ୍ଲଲଗଲେ କ'ରେ ଦୁହେଁ ।

(ବୟ ଦୌଡ଼ିଗଲା ଓ ସାଙ୍ଗେ ସାଙ୍ଗେ ଫେରି ଆସିଲା)

ବୟ—ହିଁ, ଦୁହେଁଯାକ ଗ୍ଲଲଗଲେ ।

କେ. ଟେ —ଭଲ ହେଲା । ଦେ'ବା ଗ୍ଲ' ଖା—(ବନ୍ଧୁକୁ ଟାଣିନେଲା ଚୌକ ପାଖକୁ)

ବନ୍ଧୁ—(ସଙ୍କୋଚ କରି) କଅଣ ଏଇ ଚୌକରେ ?

କେ. ଟେ.—ନାଇଁ ଆଉ କଣ ତଳେ ? ସବୁଦିନ କ'ଣ ଏ ଚଉକି ତାଙ୍କର ହୋଇଥିବ କି ? ଯେତେଦିନ ଥିଲା—ଥିଲା । ଏଇକ୍ଷଣି ରଜା ଆମର— ହାତ ପାଉଲେ ସୁନା କୁକୁଡ଼ା ଉଡ଼ିବ । ମାରି ବୋଇଲେ ଭୂତ ସ୍ୱର୍ଗଦ୍ୱାର ଦେଖିବ । କଏରେ ଏଗୁଡ଼ା ! ବସ୍ ବସ୍ । (ନିଜେ ବସିଲା)

ବନ୍ଧୁ—କୋଉ ସାଇବ ଯେବେ ଆସିବ···

କେ. ଟେ.—ଆଉ ସେ ସାଇବ ଫାଇବ ନାଆଁ ଧରନା ମ୍ । ବାଟ ଅଣ୍ଟୁ ନାହିଁ ଦଉଆ ପାଳିବାକୁ । ମୁଣ୍ଡରେ ଚକରଗିନ୍ଧ ଉଡ଼ୁଛି । ବସ ମ୍, ବସ, (ଟାଣି ବସାଇଲା) ନେ, ଏ ଛଆର ମାଲ ଆମରି ଭୋଗପାଇଁ । (କପ୍ ବଢ଼ାଇଲା) ଧର ।

ବନ୍ଧୁ—(କପ୍ ଧରି ଗୃହଆଡ଼କୁ ଗ୍ଲୁହିଁ ପିଇଲା)

କେ. ଟେ.—(କପ୍‌ରେ ମୁହଁ ଦେଇ) "ଜୟ ମହାତ୍ମା ଗାନ୍ଧୀ କି—ଜୟ ।"

ବନ୍ଧୁ—"ଜୟ ମହାତ୍ମା ଗାନ୍ଧୀ କି—ଜୟ"

କେ. ଟେ.— 'ସ୍ୱାଧୀନ ଭାରତ କି—ଜୟ"

ବନ୍ଧୁ—"ସ୍ୱାଧୀନ ଭାରତ କି—ଜୟ"

(ଉଭୟେ ଗ୍ଲ' ପିଉବାବେଳେ ପରଦା)



# ପରିଶିଷ୍ଟ

(ବାରବାଟୀ ଦୁର୍ଗ ମଧ୍ୟରୁ ସ୍ତୂପ । ଗୃହଆଡ଼ ସଜ୍ଜାହୋଇଚି । ଆଲୋକ ମାଳାରେ ଉଦ୍‌ଭାସିତ । ଆବାଳବୃଦ୍ଧବନିତା ହର୍ଷୋତ୍‌ଫୁଲ୍ଲ । ମଝିରେ ଉଡ଼ୁଛି ତିରଙ୍ଗା ପତାକା—ସମସ୍ତେ ନୀରବ । କେହି କେହି ହାତ ଘଡ଼ିକି ଗ୍ଲୁହୁଁଛନ୍ତି । ମଧ୍ୟ ରାତ୍ରି—ଦୂରରେ ଶୁଭିଲା ଘଣ୍ଟା ଶବ୍ଦ—ଗୋଟି ଗୋଟି ବାରଟା । )

ଜନତା—ଏଇ ତ ବାରଟା ବାଜିଲା । ହୋଇଗଲା ତ ଅଗଷ୍ଟ ପନ୍ଦର ।

(ପତାକା ତଳେ ଦଣ୍ଡାୟମାନ ହେଲେ ଜଣେ ଖଦଡ଼ ପୋଷାକ ପରିହିତ ନେତା—କେତେଜଣ ସ୍ୱେଚ୍ଛାସେବକ ଓ ସେବିକା ଫୁଲମାଳ ପିନ୍ଧାଇ ଦେଲେ)

ଜନତା—ଭାଇ ଓ ଭଉଣୀମାନେ ! ବହୁ ଯୁଗପରେ କାହିଁକି ଆଜି ଆମେମାନେ ଉତ୍କଳର ବୀର ମାଟି ଭଗ୍ନ ବାରବାଟୀ ଦୁର୍ଗ ପ୍ରାଙ୍ଗଣରେ ଏକତ୍ରିତ ହୋଇଥାଇଁ ତାହା ଆବାଳବୃଦ୍ଧବନିତା କାହାରିକୁ ଅବିଦିତ ନାହିଁ । ପୃଥିବୀ ଇତିହାସରେ ଆଜି ୧୯୪୭ ମସିହା ଅଗଷ୍ଟ ପନ୍ଦର ତାରିଖ ଦିନଟି ଏକ ଅଭୂତପୂର୍ବ ଘଟଣା ଦେଇ ଯାବଚ୍ଚନ୍ଦ୍ରାର୍କ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । କୋଟି ସନ୍ତାନବତୀ ଭାରତ ଜନନୀ ଆଜି ପରାଧୀନତାର ଶୃଙ୍ଖଳମୁକ୍ତା । ରକ୍ତପାତ ବିହୀନ ଏଭଳି ମୁକ୍ତି ସଂଗ୍ରାମ ପୃଥିବୀର ବିରଳ । ଏ ଶାନ୍ତି, ଅହିଂସା ଯୁଦ୍ଧର ଏକମାତ୍ର ସେନାପତି ଭାରତର ଭାଗ୍ୟ ବିଧାତା ବାପୁଜୀ ଗାନ୍ଧିଜୀ କି—

ଜନତା—ଜୟ ! (ତୋପ ଧ୍ୱନି ହେଲା)

ଜନତା—"ଜୟ ଭାରତ ମାତା କି—ଜୟ"

(ନେତା ପତାକା ଉତ୍ତୋଳନ କଲେ । ଶଙ୍ଖ, ହୁଳହୁଳି ଧ୍ୱନିରେ ଦିଗ ଉଚ୍ଛୁଳି ଉଠିଲା)

ନେତା—ଜନନୀର ବନ୍ଦନା ଗୀତି ପରେ ଆମ୍ଭମାନଙ୍କୁ ବାରବାଟୀର ତୋରଣ ପଥଦେଇ ସମସ୍ତ ନଗର ପରିଭ୍ରମଣ କରି ଏ ଆନନ୍ଦ ଦିବସ ଉଦ୍ଯାପିତ କରିବାକୁ ହେବ । ଗାଅ ସମସ୍ତେ—

ଜନତା—(ସମବେତ କଣ୍ଠ)

ଜାଗ ଜାଗ ବାରବାଟି—
ଜାଗ ଅବହେଳିତ ବୀର ବଂଶଧର
ଡାକେ ଜାଗ ବୀର ମାଟି ।୧।

କହ—ଭାରତ ଜନନୀ ଜୟ
ଜୟ—ବୀର ପ୍ରସବିନୀ ଜୟ
ଶାନ୍ତି ମୈତ୍ରୀ ପ୍ରୀତି ମନ୍ତ୍ରର ସାଧକ
ଗାନ୍ଧିଜୀ କି ଜୟ ।

ଜୟ ଭାରତ—ଜନ— ମନ ଶାନ୍ତି ବିଧାୟକ
ଜୟ ହେ ମଙ୍ଗଳ ଜୟ ।
ପ୍ରଣମେ ଚରଣେ ଜୀବ କୋଟି ।୨।

(ଜନତା ପ୍ରଣାମ କଲେ ପତାକାକୁ—ଧୀରେ ଧୀରେ ଯବନିକା ନଇଁ ଆସିଲା)

—ପଟକ୍ଷେପ—